ପ୍ରକାଶକ
**ଶାରଦା ଭବନ**
ବାଲୁବଜାର, କଟକ—୨

ପ୍ରଥମ ମୁଦ୍ରଣ :
ସ୍ନାନପୂର୍ଣ୍ଣିମା ୧୯୭୨

ମୂଲ୍ୟ :
**ପଞ୍ଚସ୍ତରୀ ପଇସା**

ମୁଦ୍ରକ :
**ଅଜନ୍ତା ପ୍ରିଣ୍ଟର୍ସ,**
କାଜିବଜାର, କଟକ-୧

# ବହିକଥା

ମହାନ୍ ରୁଷୀୟ ଲେଖକ ଟଲଷ୍ଟୟଙ୍କ ଜୀବନୀ ଲେଖିଲେ ଏକ
ବିରାଟ ଗ୍ରନ୍ଥ ହେବ; କିନ୍ତୁ ତାଙ୍କ ଜୀବନର କେତୋଟି
ସ୍ମରଣୀୟ ବିଭାଗକୁ ଏକାଠି କରି ଟଲଷ୍ଟୟଙ୍କୁ
ଜାଣିବାଭଳି କିଛିଟା ଖବର ଏଇଠି
ପରିବେଷଣ କରିଛି । ପାଠକ
ପାଠିକା ଉପଯୋଗ କଲେ-
ମୋର ପରିଶ୍ରମ ସାର୍ଥକ
ହୋଇଛି ।

ବିନୀତ
ସଂଗ୍ରାହକ

# ଲିଓ ଟଲଷ୍ଟୟ

**ଊନବିଂଶ ଶତାବ୍ଦୀର ପ୍ରଥମ ଭାଗରେ** ପୃଥିବୀ ଯେଉଁ କେତେ ଜଣ କୃତିସନ୍ତାନଙ୍କର ମୁଖାବଲୋକନ କରିଥିଲା, ସେମାନଙ୍କ ମଧ୍ୟରେ ମହାନ୍ ରୁଷୀୟ ଲେଖକ ଟଲଷ୍ଟୟ ଅନ୍ୟତମ । ଲିଓ ଲଟଷ୍ଟୟ ୧୯୨୮ ମସିହା ସେପ୍‌ଟେମ୍ବର ନଅ ତାରିଖ ଦିନ ଜନ୍ମ ଗ୍ରହଣ କରିଥିଲେ । କେନ୍ଦ୍ର ଏସିଆର ତୁଲନଗରର ଅନତିଦୂରରେ ଅବସ୍ଥିତ 'ୟାସନାୟା ପୋଲ୍ୟାନା'ରେ ତାଙ୍କର ଜନ୍ମ । ତାଙ୍କର ଜନ୍ମମାଟି ଆଜି ରୁଷ୍‌ଦେଶର ତୀର୍ଥମାଟିରେ ପରିଣତ ହୋଇଛି ।

ସେ ରୁଷରେ ଜନ୍ମ ଗ୍ରହଣ କରି କେବଳ ରୁଷ କଥା ଲେଖି ନାହାନ୍ତି । ତାଙ୍କର ସାହିତ୍ୟ ମାଧ୍ୟମରେ ସେ ସମଗ୍ର ବିଶ୍ୱ ସମ୍ମୁଖରେ ଶାନ୍ତି ଓ ସମାଜବାଦର ଏକ ଆଦର୍ଶମୟ ଚିତ୍ରର ଆଲେଖ୍ୟ ବାଢ଼ିଥାଇଛନ୍ତି । ଶାନ୍ତିର ବାଣୀ ପ୍ରଚାର କରିବା ଉଦ୍ଦେଶ୍ୟରେ ସେ ଯେଉଁ କେତୋଟି ଚରିତ୍ର ବା ପରିବେଶର ସାହାଯ୍ୟ ଗ୍ରହଣ କରିଛନ୍ତି, ସେ ଚରିତ୍ର ଓ ପରିବେଶ ବାସ୍ତବମୁଖୀ ହୋଇପାରିଛି । ବଳିଷ୍ଠ ଚରିତ୍ରର ମାଧ୍ୟମରେ ନିଜର ବଳିଷ୍ଠ ମନର ସ୍ୱାକ୍ଷର ହିଁ ଛାଡ଼ିଯାଇଛନ୍ତି । ତାଙ୍କ ଲେଖାର ନୀରବ ଭାଷା କେବଳ ରୁଷ ଦେଶର କଥା କହି ନାହିଁ । ତହିଁରେ ସମଗ୍ର ବିଶ୍ୱ ଓ ସମଗ୍ର

ମାନବସମାଜର ଆଶା ଓ ଆନନ୍ଦର ବାର୍ତ୍ତା ପ୍ରତିଫଳିତ ହୋଇଛି । ତେଣୁ ସେ ଆଜି ବିଶ୍ୱର ପ୍ରତ୍ୟେକ ନରନାରୀଙ୍କ ସମ୍ମୁଖରେ ନମସ୍ୟ ।

ଟଲଷ୍ଟୟ ଜମିଦାରଙ୍କ ପୁତ୍ର ହେଲେ ବି ପିଲାଟି ଦିନରୁ ଦୁଃଖୀ । ତାଙ୍କୁ ଯେତେବେଳେ ମାତ୍ର ଦୁଇ ବର୍ଷ ବୟସ, ସେ ସଂସାରର ସବୁଠାରୁ ପ୍ରିୟ ଜିନିଷ 'ମାଆଙ୍କର' ମୁଖ ଦର୍ଶନରୁ ବଞ୍ଚିତ ହୋଇଥିଲେ । ମାଆଙ୍କର ସ୍ନେହ-ସୁଖରୁ ବଞ୍ଚିତ ହୋଇ 'ଏର୍ଗୋଲସ୍କାୟା'ଙ୍କଦ୍ୱାରା ପାଳିତ ହୋଇଥିଲେ । ଏର୍ଗୋଲସ୍କାୟା ତାଙ୍କ ପରିବାରର ଏକ ଦୂରସମ୍ପର୍କୀୟା ମହିଳା—ମାନ୍ୟରେ ଟଲଷ୍ଟୟଙ୍କ ଖୁଡ଼ୀ ହେବେ । ସେ ଟଲଷ୍ଟୟଙ୍କ ଲାଳନପାଳନର ଭାର ଗ୍ରହଣ କରି ଆଜି ଟଲଷ୍ଟୟଙ୍କ ଆତ୍ମୀୟ ପାଠକ-ପାଠିକାମାନଙ୍କ ଆଗରେ ଭକ୍ତି ଓ ଶ୍ରଦ୍ଧାର ପ୍ରତୀକରୂପେ ପ୍ରତିପାଦିତ ହେଉଛନ୍ତି ।

ଦୁଃଖ ଆସିଲେ ଏକୁଟିଆ ଆସେ ନାହିଁ । ସମୁଦ୍ରର ଢେଉଭଳି ଗୋଟିକପରେ ଗୋଟିଏ ଦୁଃଖ ସାଙ୍ଗରେ ବନ୍ଧୁବାନ୍ଧବ ନେଇ ପହଞ୍ଚେ । ମାତୃବିୟୋଗ ହେବାର ମାତ୍ର ସାତଟି ବର୍ଷ ଯାଇଛି କି ନାହିଁ, ତାଙ୍କର ପିତା ନିକୋଲାଇ ଟଲଷ୍ଟୟଙ୍କର କାଳ ହେଲା । ବର୍ତ୍ତମାନ ଲିଓ ଟଲଷ୍ଟୟ ମାତୃହରା ଓ ପିତୃହରା । ନିରାଶ୍ରୟ ପକ୍ଷୀଶାବକ ବୃକ୍ଷକୋଟରରେ ପ୍ରକୃତିର ଦୟାଉପରେ ଯେମିତି ବଞ୍ଚେ, ଲିଓ ଟଲଷ୍ଟୟ ଆତ୍ମୀୟ-ସ୍ୱଜନଙ୍କର ଦୟାମାୟା ସ୍ନେହ ଓ ଶ୍ରଦ୍ଧା ପାଇ ବାଢ଼ିବାକୁ ଲାଗିଲେ ।

ତୁଳସୀ ଦୁଇ ପତ୍ରରୁ ବାସେ । ଲିଓ ଟଲଷ୍ଟୟ ଯେ ଭବିଷ୍ୟତ ଜୀବନରେ ଏକ ମହାନ୍ ଲେଖକ ହେବେ, ସେ କଥା ପିଲାଟିଦିନରୁ ଜଣା-ପଡ଼ୁଥିଲା । ଅତି ବାଲ୍ୟାବସ୍ଥାରୁ ସାହିତ୍ୟ ଓ ସୌନ୍ଦର୍ଯ୍ୟ ଚର୍ଚ୍ଚା କରିବାକୁ ସେ ଭାରି ଭଲ ପାଉଥିଲେ । ତାଙ୍କୁ ଯେତେବେଳେ ମାତ୍ର ସାତ ବର୍ଷ ବୟସ,

ସେ ତାଙ୍କ ଖାତାରେ 'ଇଗଲ' ଓ 'ଫାଲ୍‌କନ୍' ନାମକ ଦୁଇଟି ଗଳ୍ପ ଲେଖିଥିଲେ । ଟଲଷ୍ଟୟ ବାର ବର୍ଷ ବୟସରେ ପ୍ରିୟ ଖୁଡ଼ୀଙ୍କପାଇଁ କେତୋଟି ଅଭିନନ୍ଦନସୂଚକ କବିତା ମଧ୍ୟ ଲେଖିଥିଲେ । ଖୁଡ଼ୀଙ୍କୁ ପିଲାଟିବେଳୁ ସେ ଅତ୍ୟଧିକ ସ୍ନେହ ଓ ଭକ୍ତି କରୁଥିଲେ । ଖୁଡ଼ୀଙ୍କର ଅଗାଧ ସ୍ନେହ ଓ ଶ୍ରଦ୍ଧା ତାଙ୍କୁ ମାତୃ-ବିୟୋଗଜନିତ ଦାରୁଣ ଦୁଃଖରୁ ଦୂରେଇ ରଖିଥିଲା । ଏହିସମୟରେ ସେ ଫରାସୀ ଭାଷାରୁ କେଇଟି ଗଳ୍ପ ଅନୁବାଦ କରିଥିବାର ଜଣାପଡ଼େ ।

ୟାସନାୟା ପୋଲିଆନାର ବିଚିତ୍ର ପ୍ରକୃତି, ଉଦ୍ୟାନ, ପ୍ରଶାନ୍ତ ଆକାଶ ଓ ମୁକ୍ତ ପବନ ଲିଓ ଟଲଷ୍ଟୟଙ୍କ ଆଗ୍ରହୀ ମନ ଭିତରେ ଅନେକ କୌତୂହଳ ବୁଣିଦେଲା । ପ୍ରକୃତିର ପରିବର୍ତ୍ତନଶୀଳ ରୂପ ଓ ରଙ୍ଗ ଦେଖି ସେ ବିଭୋର ହୋଇଉଠୁଥିଲେ । ତାଙ୍କର ଭାବୁକ ମନ ଭିତରେ ୟାସନାୟା ପୋଲିଆନାର ପ୍ରତ୍ୟେକ ପରିବର୍ତ୍ତନ ଆଗ୍ରହ ଓ ସୃଜନଶୀଳ ଚିନ୍ତାଧାରା ସୃଷ୍ଟି କଲା । ବାଳକ ଟଲଷ୍ଟୟ ଲେଖିଥିଲେ, "ଶୈଶବାବସ୍ଥାର ସମୟ ଆଉ ଫେରିଆସେନା । ମୁଁ କିପରି ଏହାକୁ ଭୁଲିପାରିବି ଓ କିପରି ଏହି ଦିନର ସ୍ମୃତିଗୁଡ଼ିକୁ ପରିତ୍ୟାଗ କରିପାରିବି ?" ଲିଓ ଟଲଷ୍ଟୟଙ୍କ ଚେତନାଶୀଳ ଓ ସୃଜନାଭିଳାଷୀ ହୃଦୟ ନିଜ ଅବସ୍ଥା ଓ ପରିବର୍ତ୍ତନପ୍ରତି ଯେ ସବୁବେଳେ ସଜାଗ ଥିଲା, ଉପର୍ଯ୍ୟୁକ୍ତ ରଚନାଂଶ ତା'ର ସଠିକ ପ୍ରମାଣ ଦିଏ । ଅତି ବାଲ୍ୟକାଳରୁ ହିଁ ବୟସ୍କ ଲୋକର ଚିନ୍ତାଧାରା ତାଙ୍କ ସୃଜନକାମୀ ଲେଖାରେ ଆତ୍ମପ୍ରକାଶ କରିଥିଲା ।

ଶିଶୁ ବୟସଠାରୁ ଯୁବକ ବୟସ ପର୍ଯ୍ୟନ୍ତ ଲିଓ ଟଲଷ୍ଟୟ ୟାସନାୟା ପୋଲିଆନାରେ ରହିଥିଲେ । ମହାନଗରୀ ମସ୍କୋରେ ବି ଅନେକ କାଳ କଟାଇଛନ୍ତି । ୧୮୪୪ ମସିହାରେ ସେ କାଜାନ୍ ବିଶ୍ୱବିଦ୍ୟାଳୟରୁ ମେଟ୍ରିକ୍ ପାଶ କରି ୧୮୪୭ ମସିହାରେ ବିଶ୍ୱବିଦ୍ୟାଳୟ ଡିଗ୍ରୀ ନ ନେଇ ଚାଲି ଆସିଥିଲେ ।

# ଶିକ୍ଷା

ବିଶ୍ୱବିଦ୍ୟାଳୟ ଶିକ୍ଷା ବ୍ୟବସ୍ଥା ତାଙ୍କୁ ସନ୍ତୁଷ୍ଟ କରିପାରି ନ ଥିଲି ; କାରଣ ସେଠାରେ ଛାତ୍ରମାନଙ୍କୁ ଅନେକ ସମୟରେ ଅବୋଧ ଓ ଅର୍ଥହୀନ ପାଠ୍ୟକ୍ରମ ମୁଖସ୍ଥ କରିବାକୁ ପଡ଼ୁଥିଲା । ସେ ପାଠ୍ୟକ୍ରମର ସାଧାରଣ ଜୀବନ ନିର୍ବାହ ସଙ୍ଗେ କୌଣସି ସମ୍ପର୍କ ନ ଥିଲା । କେବଳ ପରୀକ୍ଷାରେ ପାଶ୍ କରିବାକୁ ଇଚ୍ଛା ନ ଥିବା ପାଠଘୋଷି ସେମାନେ ମୁଖସ୍ଥ କରିବାକୁ ବାଧ ହେଉଥିଲେ । ଏହାଦ୍ୱାରା ଛାତ୍ରମାନଙ୍କ ଆଧାତ୍ମିକ ଦୃଷ୍ଟିକୋଣ ଅନ୍ଧାର ହୋଇ ଯାଉଥିଲା । ପଢ଼ିବାସମୟରେ ସେ ଅଭିଜାତ-କୁଳର ସନ୍ତାନ ଥିଲେ ହେଁ ଅନେକ ମଧ୍ୟବିତ୍ତ ଓ ଗରିବ ଛାତ୍ରଙ୍କ ସଂସ୍ପର୍ଶରେ ଆସିଥିଲେ । ଲିଓଙ୍କର ଅମାୟିକ ବ୍ୟବହାରରେ ସମସ୍ତେ ସନ୍ତୁଷ୍ଟ ଥିଲେ । ତାଙ୍କ ସଙ୍ଗରେ ଖୋଲାମନରେ ମିଶି ସୁଖ ଦୁଃଖ ହେବାକୁ ସେମାନେ ଯଥେଷ୍ଟ ଆଗ୍ରହ ପ୍ରକାଶ କରୁଥିଲେ । ବିଶ୍ୱବିଦ୍ୟାଳୟରେ ଅଭିଜାତ ଶ୍ରେଣୀରୁ ଆସିଥିବା ଛାତ୍ରମାନଙ୍କ ଅପେକ୍ଷା ଅଭିଜାତ ଶ୍ରେଣୀରୁ ଆସି ନ ଥିବା ଛାତ୍ରଙ୍କ ଜ୍ଞାନପ୍ରତି ଅପେକ୍ଷାକୃତ ଅଧିକ ଆଗ୍ରହ ଥିବାର ସେ ଉପଲବ୍ଧି କରିପାରିଥିଲେ ।

ବିଶ୍ୱବିଦ୍ୟାଳୟ ପରିତ୍ୟାଗ କରି ୟାସନାୟା ପାଲିଆନାର ସର୍ବସାଧାରଣ କ୍ଷେତ୍ରକୁ ସେ ଓହ୍ଲାଇଆସିଥିଲେ । ସେଇଠି ଅତ୍ୟାଚାରିତ ରୁଷୀୟ କୃଷୀକୁଳଙ୍କ ଜୀବନଯାପନ ପ୍ରଣାଳୀ ଦେଖି ସେ ଅତିଶୟ ଦୁଃଖିତ ହେଲେ । ପ୍ରତ୍ୟେକ କୃଷୀର ଆଖିରେ ଆର୍ତ୍ତନାଦର ସୂଚନା ସ୍ପଷ୍ଟ ପ୍ରତିଭାତ ହେଉଥିଲା । ସେମାନେ ଶୋଷଣ ଓ ପୀଡ଼ନକୁ ନୀରବରେ ସହ୍ୟ କରି ଯାଉଥିଲେବି ହୃଦୟ ତାଙ୍କର କାନ୍ଦୁଥିଲା । ସେମାନଙ୍କ ହାତରେ ପ୍ରତିକାରର ଉପାୟ ସୁଦ୍ଧା ନ ଥିଲା । ଲିଓ ଟଲଷ୍ଟୟ

ସେମାନଙ୍କ ସଙ୍ଗରେ ମିଶି କାମ କରିବାକୁ ଇଚ୍ଛା କଲେ । ଜୀବନ ବିଦ୍ୟାଳୟର ମହାଶିକ୍ଷା ଏଇଠୁ ଆରମ୍ଭ ହେଲା ।

## ଟଲଷ୍ଟୟ ସ୍କୁଲ

ଲିଓ ଟଲଷ୍ଟୟ ଭାବିଲେ, ଅସଲ ଶିକ୍ଷାର ଅଭାବ ହିଁ ଗୃଷୀକୁଳଙ୍କ ଦୁର୍ଗତିର ପ୍ରଧାନ କାରଣ । ସମସ୍ତେ ଯଦି ଉଚିତ ଶିକ୍ଷା ପାଆନ୍ତେ, ତାହାହେଲେ ଜୀବନର ମାର୍ଗ ସେମାନେ ଖୋଜି ବାହାର କରିବାକୁ ସକ୍ଷମ ହୁଅନ୍ତେ । ସେ ଗୃଷୀକୁଳଙ୍କ ସନ୍ତାନ-ସନ୍ତତିଙ୍କ ସକାଶେ ଗୋଟିଏ ସ୍କୁଲ ଏବଂ ଗୋଟିଏ ଡାକ୍ତରଖାନା ପ୍ରତିଷ୍ଠା କଲେ । ଏହି ସମୟରେ ସେ ନିଜ ବ୍ୟକ୍ତିଗତ ଶିକ୍ଷାପ୍ରତି ମଧ୍ୟ ଦୃଷ୍ଟି ଦେଇଥିଲେ ଓ ପଢ଼ାପଢ଼ିରେ ଅନେକ ସମୟ ବିନିଯୋଗ କରିଥିଲେ ।

ୟାସନାୟା ପୋଲ୍ୟାନାର ଲିଓ ଟଲଷ୍ଟୟ ସ୍କୁଲ ଏକ ନୂତନ ଧରଣର ସ୍କୁଲ । ଏହା ୧୮୫୯ରେ ମହାନ୍ ରୁଷୀୟ ଲେଖକଙ୍କଦ୍ୱାରା ପ୍ରତିଷ୍ଠିତ ହୋଇଥିଲା । ଏହି ସ୍କୁଲର ଶିକ୍ଷା-ପ୍ରଣାଳୀ ଶିଶୁମାନଙ୍କର ସରସ, ସୁନ୍ଦର ପ୍ରବୃତ୍ତିକୁ ସୁନିୟନ୍ତ୍ରିତ କରିବାରେ ସକ୍ଷମ ହୋଇପାରିଥିଲା । ସେ ସମୟର ଗ୍ରାମ୍ୟ ସ୍କୁଲ ସମ୍ପର୍କରେ ଗବେଷଣା କରି ଟଲଷ୍ଟୟ ସଠିକ୍‌ଭାବରେ ବୁଝିପାରିଥିଲେ ଯେ ସେହି ସ୍କୁଲସମୂହର ଶିକ୍ଷାଦାନ ପ୍ରଣାଳୀ ଜୀବନର ବାସ୍ତବ ପରିବେଶ ପାଖରୁ ଅନେକ ଦୂରରେ । ବିକ୍ଷିପ୍ତ ଜୀବନଯାତ୍ରୀଙ୍କୁ ନିୟନ୍ତ୍ରିତ କରି ଠିକ୍ ବାଟରେ ଆଗେଇଦେବାକୁ ତହିଁରେ ସ୍ପଷ୍ଟ ନିର୍ଦ୍ଦେଶ କିଛି ନାହିଁ । ସରଳମତି ବାଳକ-ବାଳିକା ଅର୍ଥହୀନ ପାଠ୍ୟକ୍ରମକୁ ଆୟତ୍ତ କରିବାକୁ ଅନେକ କଷ୍ଟ ସ୍ୱୀକାର କରନ୍ତି ଓ ନିର୍ମମଭାବରେ ମାଡ଼ ଖାଆନ୍ତି । ଏସବୁ ସତ୍ତ୍ୱେ ସେମାନେ ଯେଉଁ ବିଦ୍ୟା ଆୟତ୍ତ କରି ଫେରନ୍ତି, ତାହା ସେମାନଙ୍କୁ ଆଧ୍ୟାତ୍ମିକ ଦୃଷ୍ଟିକୋଣରୁ ପଙ୍ଗୁ କରିପକାଏ ଓ ଜୀବନର

ଦୈନନ୍ଦିନ ସମସ୍ୟାବହୁଳ ଯାତ୍ରାପଥକୁ ସମାଧାନମୂଳକ ଆଲୋକପାତ କରି ସଫଳତାର ବାର୍ତ୍ତା ଶୁଣାଏ ନାହିଁ । ଏସବୁ ବିଚାର କରି କାଉଣ୍ଟ ଟଲଷ୍ଟୟ ୟାସନାୟା ପୋଲ୍ୟାନାରେ ଯେଉଁ ସ୍କୁଲ ପ୍ରତିଷ୍ଠା କଲେ; ତାହା ସମସାମୟିକ ଗ୍ରାମ୍ୟ ସ୍କୁଲମାନଙ୍କ ଅପେକ୍ଷା ଯଥେଷ୍ଟ ଉନ୍ନତ ଓ ଆକର୍ଷଣୀୟ ହୋଇପାରିଥିଲା ।

ୟାସନାୟା ପୋଲ୍ୟାନା ସ୍କୁଲରେ ଶିକ୍ଷକ ଓ ଛାତ୍ରମାନେ ଏକତ୍ର ବାସ କରୁଥିଲେ । ଶିକ୍ଷକ ଓ ଛାତ୍ରମାନଙ୍କ ମଧ୍ୟରେ ସୁସମ୍ପର୍କ ପ୍ରତିଷ୍ଠା ହୋଇପାରିଥିଲା । ପିଲାମାନଙ୍କୁ ଦୈହିକ ଦଣ୍ଡରୁ ଦୂରରେ ରଖାଯାଇଥିଲା । ଏକ ସୃଜନଶୀଳ ପରିବେଶ ସୃଷ୍ଟି କରିବାକୁ ପିଲାମାନଙ୍କୁ ସବୁବେଳେ ଆନନ୍ଦିତ ଓ ଫୁର୍ତ୍ତି ରଖିବାକୁ ଚେଷ୍ଟା କରାଯାଉଥିଲା । ସେମାନଙ୍କୁ ଚମତ୍କାରପ୍ରଦ ଗଳ୍ପ ଓ ଅଭିନବ କ୍ରୀଡ଼ା ସାହାଯ୍ୟରେ ବିଭିନ୍ନ ଶିକ୍ଷା ଦିଆଯାଉଥିଲା । ପିଲାମାନେ ଖୁବ୍ ଖୁସିରେ କଷ୍ଟସାଧ୍ୟ ବିଦ୍ୟାକୁ ଅନାୟାସରେ ଆୟତ୍ତ କରିପାରୁଥିଲେ ।

ଟଲଷ୍ଟୟ ନିଜେ ବ୍ୟକ୍ତିଗତଭାବରେ ପିଲାଙ୍କର ଦାୟିତ୍ୱ ଗ୍ରହଣ କରି ସେମାନଙ୍କ ଉନ୍ନତିପାଇଁ ନିଜକୁ ସଂପୂର୍ଣ୍ଣଭାବରେ ନିୟୋଜିତ କରିଦେଲେ । ସେ ସେମାନଙ୍କୁ ଘରେ ଓ ବାହାରେ ଆଗ୍ରହପ୍ରଦ ଗପ କହି ସେମାନଙ୍କ ଦୃଷ୍ଟିକୁ ପ୍ରସାରିତ କରିବାରେ ସାହାଯ୍ୟ କରୁଥିଲେ ।

ଶିଶୁମାନଙ୍କୁ ସେ ପ୍ରାଣ ଦେଇ ଭଲ ପାଉଥିଲେ । ତାଙ୍କୁ ମଣିଷ କରି ଗଢ଼ିବାସକାଶେ ସେ ଖୁବ୍ ବ୍ୟାକୁଳ ଥିଲେ । ପିଲାଙ୍କପାଇଁ ଅନେକ ଛୋଟ ଛୋଟ ଗଳ୍ପ ଲେଖି ସବୁଦିନପାଇଁ ପିଲାଙ୍କ ଆଖିରେ ଗୋଟିଏ ପ୍ରିୟ ଶିକ୍ଷକ ହୋଇ ରହିଛନ୍ତି । ରୁଷିଆର ପ୍ରତ୍ୟେକ ଲୋକ ତାଙ୍କର ଶିକ୍ଷକ-ଜୀବନପ୍ରତି ଶ୍ରଦ୍ଧା ଓ ଭକ୍ତି ଜ୍ଞାପନ କରନ୍ତି । ଶିକ୍ଷାଦାନ ପ୍ରଣାଳୀରୁ ତାଙ୍କର ସଂସ୍କାରକ ମନର ବିଶେଷ ପ୍ରମାଣ ମିଳିଥାଏ । ଆଜି ସେହି ସ୍କୁଲର

ବଂଶଧରମାନେ ରୁଷିଆର ବିଭିନ୍ନ କ୍ଷେତ୍ରରେ ପ୍ରବେଶ କରି ଅନେକ ଗୁରୁ-ଦାୟିତ୍ୱ ବହନ କରିଛନ୍ତି । ରୁଷିଆ ସରକାର ୟାସନାୟା ପୋଲ୍ୟାନାରେ ଗୋଟିଏ ସ୍କୁଲ ବସାଇ ଏହାର ପ୍ରଥମ ଶିକ୍ଷକ ଟଲଷ୍ଟୟଙ୍କ ସ୍ମୃତିକୁ ଅକ୍ଷୟ କରି ରଖିଛନ୍ତି । ଟଲଷ୍ଟୟଙ୍କ ସଂସ୍କାରମୂଳକ ଶିକ୍ଷାଦାନ ପ୍ରଣାଳୀ ତତ୍‌କାଳୀନ ସରକାରଙ୍କ ପକ୍ଷରେ ଅସହ୍ୟ ବୋଧ ହେଉଥିଲା । ସେ ତାଙ୍କୁ ଏଥିପାଇଁ ସନ୍ଦେହ ଦୃଷ୍ଟିରେ ଦେଖୁଥିଲେ ଓ ଟଲଷ୍ଟୟ ୟାସନାୟା ପୋଲ୍ୟାନାରେ ଅନୁପସ୍ଥିତବେଳେ ଖାନତଲାସ କରୁଥିଲେ ।

## ସୈନିକ ଟଲଷ୍ଟୟ

ଟଲଷ୍ଟୟ ଜମିଦାର ପୁତ୍ର ଥିଲେ । ସେସମୟର ଶାସକ, ଜମିଦାର ପରିବାର ଭିତରୁ କେହି ସୈନ୍ୟବିଭାଗରେ ଯୋଗଦେବାକୁ ଇଛା କଲେ ପ୍ରଥମେ ସୁଯୋଗ ଦେଉଥିଲେ । ତେଣୁ ଟଲଷ୍ଟୟ ତାଙ୍କ ବଡ଼ ଭାଇ ନିକୋଲାଇଙ୍କ ପ୍ରଭାବରେ ପଡ଼ି ଯେତେବେଳେ ସୈନ୍ୟବାହିନୀରେ ଯୋଗଦେବାକୁ ଇଛା ପ୍ରକାଶ କଲେ, ସେ ସେଥିରେ ସର୍ବପ୍ରଥମ ସୁଯୋଗ ପାଇବା ସ୍ୱାଭାବିକ । ସେ 'କକେସସ୍' ଯାଇ ସୈନ୍ୟବାହିନୀରେ ଯୋଗ ଦେଲେ ।

ସେ କକେସସ୍‌ରେ ଲେଖିଥିଲେ, 'ମୁଁ କକେସସ୍ ଆସିଛି ବୋଲି କେବେହେଲେ ଅନୁତାପ କରିବି ନାହିଁ, ଏଭଳି ସିଦ୍ଧାନ୍ତ କରିଥିବା ଯୋଗୁ ମୋର ଅନେକ ଭଲ ହେବ ।'

ପ୍ରକୃତରେ ତାଙ୍କ କକେସସ୍ ରହଣି କାଳ ମଧ୍ୟରେ, ଅର୍ଥାତ୍ ୧୮୫୧-୫୪ ମଧ୍ୟରେ ତାଙ୍କର ସାହିତ୍ୟିକ ଜୀବନର ପ୍ରଥମ ମୂଳଦୁଆ ସୁଦୃଢ଼ ଭାବରେ ପଡ଼ିଥିଲା ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ । ଏହି ଚାରିବର୍ଷ ଭିତରେ ସେ 'ଚାଇଲ୍‌ଡ଼୍ ହୁଡ଼୍' ଓ 'ଆଡ଼ଲସେନ୍‌ସ' ଉପନ୍ୟାସ

ଦୁଇଟି ଲେଖିଥିଲେ । ରୁଷିଆର ସୈନିକ ଜୀବନକୁ କେନ୍ଦ୍ର କରି ସେ ଅନେକ ଗୁଡ଼ିଏ କ୍ଷୁଦ୍ରଗଳ୍ପ ମଧ୍ୟ ଲେଖିଥିଲେ । କକେସସ୍‌ରେ ରହିବା ଭିତରେ ତାଙ୍କର ଜନପ୍ରିୟ ଉପନ୍ୟାସ କୋସ ସୃଷ୍ଟି ଅନ୍ୟତମ । ୧୮୫୨ ମସିହାରେ 'ସୋଭେ୍ରମେନିକ' ପତ୍ରିକାରେ 'ଚାଇଲଡ୍‌ ହୁଡ୍‌' ଉପନ୍ୟାସଟି ପ୍ରକାଶ ପାଇଲା । ଏହି ଉପନ୍ୟାସଟି ପ୍ରକାଶ ପାଇବା ପରେ ପରେ ରୁଷିଆର ବରିଷ୍ଠ ଲେଖକମାନଙ୍କ ଭିତରେ ଟଲଷ୍ଟୟଙ୍କ ସ୍ଥାନ ରହିଲା । 'ଆଡ଼୍ରୋଲ ସେନ୍‌ସ୍‌' ଓ 'ଯୁଦ୍ଧକାଳୀନ ଗଳ୍ପ' ତାଙ୍କର ଏହି ପ୍ରାପ୍ତ ଆସନକୁ ସୁଦୃଢ଼ କରିବାରେ ସାହାଯ୍ୟ କଲା ।

ତାଙ୍କ ସାହିତ୍ୟ ସୃଷ୍ଟିରେ ଏମିତି ଏକ ମୌଳିକ ଅଂଶଥିଲା ଯାହା ଖ୍ୟାତ, ଅଖ୍ୟାତ ପ୍ରତ୍ୟେକ କଳାକାରଙ୍କ ମନ ଉପରେ ଗୋଟିଏ ଅଦ୍ଭୁତ ଆନ୍ଦୋଳନ ସୃଷ୍ଟି କରିପାରିଥିଲା ।

୧୮୫୩ ରେ ରୁଷ ବିରୁଦ୍ଧରେ ବ୍ରିଟେନ୍‌, ଫ୍ରାନସ୍‌ ଓ ତୁର୍କି ଯୁଦ୍ଧ ଆରମ୍ଭ କରିଦେଲେ । ନଭେମ୍ବର ୧୮୫୦ ରେ ଟଲଷ୍ଟୟ 'ସେଭାସ୍ତୋ-ପୋଲ୍‌'କୁ ଆସିଥିଲେ । ଜଣେ ଅଫିସର ଭାବରେ ତାଙ୍କୁ ସେଭାସ୍ତୋପୋଲର ଦାୟିତ୍ୱ ଦିଆଗଲା । ସେ ସେଭାସ୍ତୋପୋଲ ରକ୍ଷାଦାୟିତ୍ୱ ମୁଣ୍ଡାଇବା ପରେ ଯୁଦ୍ଧ ଓ ବନ୍ଦିଶିକାର ସାକ୍ଷାତ ସମ୍ପର୍କରେ ଆସିଲେ । ଏହା ପୂର୍ବରୁ କକେସସର ଅଭିଜ୍ଞତା ତାଙ୍କର ଥିଲା । ଏହିସବୁ ପ୍ରତ୍ୟକ୍ଷ ଅନୁଭୂତି ଯେ ସ୍ୱରଚିତ ଗଳ୍ପ ଓ ଉପନ୍ୟାସମାନଙ୍କରେ ନାୟକ ନାୟିକାଙ୍କ ଚରିତ୍ର ଭିତରେ ଦକ୍ଷତା ସହକାରେ ଫୁଟାଇ ପାରିଛନ୍ତି ।

ଯୁଦ୍ଧକ୍ଷେତ୍ର 'କ୍ରିମିଆ'କୁ ସେ ଯୁଦ୍ଧ ଦେଖିବାକୁ ଯାଇଥିଲେ, କିନ୍ତୁ ସେଠାରେ ସେ ଦେଶପ୍ରେମ ଭାବ ଉଦ୍‌ବୁଦ୍ଧ ହୋଇଥିଲେ । ସେହି ସମୟରେ ଟଲଷ୍ଟୟ ଲେଖିଥିଲେ, "ରୁଷ ଲୋକଙ୍କ ନୈତିକ ଶକ୍ତି ଅତ୍ୟନ୍ତ ପ୍ରବଳ । ବର୍ତ୍ତମାନ ଯୁଦ୍ଧରେ ଆତ୍ମବଳି ଦେଉଥିବା ଲୋକମାନେ ହିଁ ରୁଷିଆର

ନାଗରିକ ହୋଇ ରହିବେ । ସେମାନେ ସେମାନଙ୍କ ଆତ୍ମତ୍ୟାଗ କଥା ଭୁଲିବେ ନାହିଁ । ସାମାଜିକ କାର୍ଯ୍ୟକଳାପରେ ସେମାନେ ମର୍ଯ୍ୟାଦା ଓ ଗର୍ବ ସହକାରେ ଅଂଶ ଗ୍ରହଣ କରିବେ ।"

## ବିବାହ ଓ ଜମିଦାରୀ

୧୮୬୨ ମସିହାରେ ଟଲଷ୍ଟୟ ଆନ୍ଦ୍ରେୟେଭନା ବେର୍ସ ନାମକ ମସ୍କୋର ଜଣେ ଚିକିତ୍ସକଙ୍କର ଝିଅଙ୍କୁ ବିବାହ କଲେ । ତାଙ୍କର ବୈବାହିକ ଜୀବନ ସୁଖପ୍ରଦ ହୋଇ ନ ଥିଲା । ନାନାପ୍ରକାର ମନୋମାଳିନ୍ୟ ଭିତରେ ଟଲଷ୍ଟୟ ଗତି କରିଥିଲେ । ଶେଷ ଜୀବନରେ ସେ ଏଥିପାଇଁ ଅନେକ ଅଶାନ୍ତିର ସମ୍ମୁଖୀନ ହୋଇଥିଲେ ।

କିନ୍ତୁ ବୈବାହିକ ଜୀବନର ଜଞ୍ଜାଳ ଓ ଅଶାନ୍ତି ତାଙ୍କ ସାହିତ୍ୟ-ସାଧନାକୁ ଅଟକାଇ ପାରି ନ ଥିଲା । ବିବାହପରେ ସେ ୟାସନାୟା ପୋଲିଆନା ଜମିଦାରୀଟିର ତତ୍ତ୍ୱାବଧାନପ୍ରତି ମନୋନିବେଶ କରିବା ସଙ୍ଗେ ସଙ୍ଗେ ସାହିତ୍ୟ-ସାଧନାରେ ମଧ୍ୟ ବ୍ରତୀ ଥିଲେ । ୟାସନାୟା ପୋଲିଆନା ଓ ତାର କୋଳର ପ୍ରଜାବର୍ଗଙ୍କୁ ସେ ଅତ୍ୟନ୍ତ ଭଲ ପାଉଥିଲେ । ନିରୀହ ପ୍ରଜା ଓ ସରଳମତି ବାଳକ ବାଳିକାଙ୍କ ଦୁଃଖ ଦେଖିଲେ ତାଙ୍କ ହୃଦୟ କାନ୍ଦିଉଠୁଥିଲା । ସେମାନଙ୍କ ଉନ୍ନତିପାଇଁ ସେ ସର୍ବଦା ଚେଷ୍ଟା କରୁଥିଲେ । ୟାସନାୟା ପୋଲିଆନାର ପ୍ରତ୍ୟେକ ନାଗରିକ ସୁଶିକ୍ଷିତ ହୋଇ ଦେଶର ବିଭିନ୍ନ କ୍ଷେତ୍ରରେ ପ୍ରବେଶପୂର୍ବକ ଗୁରୁତ୍ୱପୂର୍ଣ୍ଣ ଦାୟିତ୍ୱ ନିଜ ହାତକୁ ନିଅନ୍ତୁ, ଏହା ତାଙ୍କର ଆନ୍ତରିକ ଉଦ୍ଦେଶ୍ୟ ଥିଲା । ଜମିଦାରୀର ମାଲିକ ହୋଇ ବି ଜମିଦାରର ରକ୍ଷଣଶୀଳ ପରମ୍ପରା ଭାଙ୍ଗି ସେ ପ୍ରାସାଦ-ପାହାଚରୁ ଓହ୍ଲାଇଆସି ଧୂଳିମାଟି ଉପରେ ନିଃସହାୟଭାବରେ ଛିଡ଼ାହୋଇଥିବା ଦରିଦ୍ର, ଅଶିକ୍ଷିତ ପ୍ରଜା ଓ ତାଙ୍କର ସନ୍ତାନ-ସନ୍ତତିମାନଙ୍କ ସଙ୍ଗେ ମନଆନନ୍ଦରେ ମିଶୁଥିଲେ । ସେମାନଙ୍କ ଭଲପାଇଁ ସ୍କୁଲ ଘର ଓ

ହାସପାତାଳ ନିର୍ମାଣ କରିଥିଲେ । ଟଲ୍‌ଷ୍ଟୟ ନିଜ ଡାଏରୀରେ ଲେଖିଥିଲେ, "ମୋର ପ୍ରିୟ ୟାସନାୟା ପୋଲିଆନା ବ୍ୟତୀତ ରୁଷ କଥା କଳ୍ପନା କରିବା ବା ରୁଷପ୍ରତି ମୋର ଦୃଷ୍ଟିଭଙ୍ଗୀ କଥା କଳ୍ପନା କରିବା ମୋ ପକ୍ଷରେ କଷ୍ଟକର ।"

ତାଙ୍କ ଡାଏରୀରେ ଏଇ ପଦକ କଥାଭିତରେ ତାଙ୍କ ହୃଦୟର ସମସ୍ତ ସ୍ନେହ ଗାଁ-ମାଟିପାଇଁ ଏକତ୍ରିତ ହୋଇ ରହିଛି । ୟାସନାୟା ପୋଲିଆନାର ପ୍ରତ୍ୟେକ ନାଗରିକ ଅନେକ ଥର ଏ କଥାଟିକୁ ପଢ଼ିବେ । ବିଭିନ୍ନ ଭାଷାରେ ଅନୂଦିତ ବିଭିନ୍ନ ଜାତିର ନାଗରିକ କଥା ପଢ଼ି ଟଲ୍‌ଷ୍ଟୟଙ୍କ ହୃଦୟ ସଙ୍ଗେ ପରିଚିତ ହେବେ । ଆଜି ୟାସନାୟା ପୋଲିଆନାର ବର୍ତ୍ତମାନ ଓ ଭବିଷ୍ୟତରେ ପ୍ରଜାବର୍ଗ ନିଜକୁ ଗର୍ବିତ ମନେ କରିବେ ଯେ ସେମାନେ ଟଲ୍‌ଷ୍ଟୟଙ୍କ ଜନ୍ମମାଟିର ସନ୍ତାନ । ଯେଉଁ ଟଲ୍‌ଷ୍ଟୟଙ୍କୁ ବିଶ୍ୱର ସାହିତ୍ୟିକଭାବରେ ପୃଥିବୀର ଅଗଣିତ ଜନତା ହୃଦୟର ସ୍ନେହଭକ୍ତି ପୁଷ୍ପ ଶ୍ରଦ୍ଧା ସହିତ ସମର୍ପଣ କରି ସୁଖୀ ହୁଏ ।

## ସାହିତ୍ୟ ଓ ଟଲ୍‌ଷ୍ଟୟ

ଟଲ୍‌ଷ୍ଟୟ ସାଥିରେ ସାହିତ୍ୟ ନେଇ ଜନ୍ମ ଗ୍ରହଣ କରିଥିଲେ । ପିଲାଟି ଦିନରୁ ସାହିତ୍ୟ ଚର୍ଚ୍ଚା କରିବାକୁ ସେ ଖୁବ୍ ଭଲପାଉଥିଲେ । ସାତ ବର୍ଷରୁ ଆରମ୍ଭ କରି ବୟାଅଶୀ ବର୍ଷ ପର୍ଯ୍ୟନ୍ତ ସାହିତ୍ୟ ସଙ୍ଗେ ସେ ନିଜକୁ ମିଶାଇ ରଖିଯାଇଛନ୍ତି । ଅନେକ ଦେଶ, ଅନେକ ଜାତିର ଲୋକଙ୍କ ସଙ୍ଗେ ସମ୍ପର୍କ ପ୍ରତିଷ୍ଠା କରି ସେମାନଙ୍କ ସମସ୍ୟାଗୁଡ଼ିକ ଗମ୍ଭୀରଭାବେ ଗବେଷଣା କରିଅଛନ୍ତି । ସେ ମଣିଷ ଜାତିକୁ ଅଶେଷ ସ୍ନେହ କରୁଥିଲେ । ମଣିଷ ଜାତିର ଦୁଃଖ ଦେଖି ନିଜ ଆଖିରୁ ଲୁହ ଗଡ଼ାଉଥିଲେ । ପ୍ରତ୍ୟେକ ସମସ୍ୟାର ସମାଧାନ କରିବାକୁ ଦିନ-ରାତି ବସି ଚିନ୍ତା କରୁଥିଲେ । ଏଣୁ ସାହିତ୍ୟସୃଷ୍ଟିରେ ଏସବୁ ଫୁଟିଉଠିବା ସ୍ୱାଭାବିକ । ଟଲ୍‌ଷ୍ଟୟ ସାହିତ୍ୟ,

ସମଗ୍ର ଦେଶ ଓ ଜାତିର ସାହିତ୍ୟ । ତାଙ୍କର ପୁସ୍ତକପ୍ରଦତ୍ତ ଚରିତ୍ରଗୁଡ଼ିକ ସାଧାରଣ ମଣିଷଗୋଷ୍ଠୀରୁ ସଂଗୃହୀତ । ସେଥିପାଇଁ ଟଲଷ୍ଟୟଙ୍କ ସାହିତ୍ୟ ଅନେକ ଦିନର ପୁରୁଣା ହୋଇଯାଇଥିଲେ ବି ଏବେ ମଧ୍ୟ ନୂଆ ଲାଗେ; କାରଣ ତହିଁରେ ଅତିରଞ୍ଜିତ ଚିତ୍ର ନାହିଁ । ସବୁଗୁଡ଼ିକ ଆମର ଆଖିଆଗର ଦୈନନ୍ଦିନ ଘଟଣାବଳୀ । ଆଖି ଫିଟାଇଲେ ଆମ ଆଖିଆଗରେ ଟଲଷ୍ଟୟଙ୍କ ସାହିତ୍ୟ କଥାକହେ । ଟଲଷ୍ଟୟଙ୍କ ଉପରେ ସମୟର କୌଣସି ପ୍ରଭାବ ପଡ଼ି ନାହିଁ କି ପଡ଼ିପାରିବ ନାହିଁ; କାରଣ, ତାହା ଚିରନ୍ତନ ! ଅବିନଶ୍ୱର ! !

୧୮୫୫ ମସିହାର ଶେଷଭାଗରେ ସେ ରୁଷର କେତେକ ବିଶିଷ୍ଟ ଲେଖକଙ୍କ ସଙ୍ଗେ ସାକ୍ଷାତ କରିଥିଲେ । ସେହି ସାହିତ୍ୟିକମାନେ ଟଲଷ୍ଟୟଙ୍କୁ ଜଣେ ସହୃଦୟ ଲେଖକଭାବରେ ଗ୍ରହଣ କଲେ; କାରଣ, ତତ୍ପୂର୍ବରୁ ଟଲଷ୍ଟୟଙ୍କର ଚାଇଲ୍ଡ୍‌ହୁଡ୍, ଆଡଲସେନ୍‌ସ୍ ଓ ଯୁଦ୍ଧକାଳୀନ ଗଳ୍ପ ପ୍ରଭୃତି ପ୍ରକାଶ ପାଇସାରିଥାଏ ଓ ତାଙ୍କର ଉନ୍ନତ କଳାପ୍ରତି ପ୍ରତ୍ୟେକ ଲେଖକ ଆକୃଷ୍ଟ ହୋଇସାରିଥାନ୍ତି । ବିଖ୍ୟାତ ରୁଷୀୟ ଚିନ୍ତକ 'ଏନ୍. ଜି. ଚେର୍ଣ୍ଣିଶେଭ୍‌ସ୍କି' ତାଙ୍କର ପ୍ରଥମ ଲେଖାକୁ ପଢ଼ି ସେ ସମ୍ବନ୍ଧରେ ଏକ ଅନୁକୂଳ ମତ ପ୍ରକାଶ କରିଥିଲେ ।

ଯୁଦ୍ଧଭୂମିରୁ ଫେରିବାପରେ ସେ ସ୍ୱାମାନ୍ୟଭାବରେ ଲେଖିବାକୁ ଆରମ୍ଭ କଲେ । ୧୮୬୧ରୁ ୧୯୦୫ ପର୍ଯ୍ୟନ୍ତ ଟଲଷ୍ଟୟଙ୍କ ସାହିତ୍ୟିକ ଜୀବନ ବେଶ୍ ତାତ୍ପର୍ଯ୍ୟ ତଥା ଗୁରୁତ୍ୱପୂର୍ଣ୍ଣ ସମୟ । ଏହିସମୟରେ ଟଲଷ୍ଟୟଙ୍କର ସାହିତ୍ୟପ୍ରତିଭାର ସମ୍ୟକ୍ ବିକାଶ ସାଧିତ ହୋଇପାରିଥିଲା । ଲେନିନ୍ ଟଲଷ୍ଟୟଙ୍କ ସ୍ୱତନ୍ତ୍ର ବିଚାରଧାରା ସମ୍ବନ୍ଧରେ ତାଙ୍କ ସାହିତ୍ୟ ପଠନ କରି ଅନେକ ଗବେଷଣାମୂଳକ ମତ ଦେଇଛନ୍ତି ।

ଟଲଷ୍ଟୟ ପ୍ରାୟ ଏକଶତ ଗ୍ରନ୍ଥର ସୃଷ୍ଟିକର୍ତ୍ତା ।

# ୱାର୍ ଏଣ୍ଡ୍ ପିସ୍

ଟଲଷ୍ଟୟ ଏହି ପୃଥିବୀବିଖ୍ୟାତ ଉପନ୍ୟାସ ୧୮୬୭ରେ ଆରମ୍ଭ କରିଥିଲେ । ଏହି ଉପନ୍ୟାସଟି ଶେଷ କରିବାକୁ ସେ ସୁଦୀର୍ଘ ପାଞ୍ଚ ବର୍ଷ ଧରି ଅକ୍ଲାନ୍ତ ପରିଶ୍ରମ କରିଅଛନ୍ତି । ଟଲଷ୍ଟୟଙ୍କ ସୁଦୀର୍ଘ ପାଞ୍ଚ ବର୍ଷର ଅଧ୍ୟବସାୟକୁ ସାର୍ଥକ କରି ଶେଷରେ ଆତ୍ମପ୍ରକାଶ କଲା ଏହି ଜନପ୍ରିୟ ଉପନ୍ୟାସ 'ଯୁଦ୍ଧ ଓ ଶାନ୍ତି' (ୱାର୍ ଏଣ୍ଡ୍ ପିସ୍) । ତାଙ୍କର ଏହି ସାଧନା ଓ ଅଧ୍ୟବସାୟ କଥା ସେ ନିଜ ଡାଏରିରେ ଲେଖିଯାଇଛନ୍ତି ।

ସାଧାରଣ ରୁଷ ଜନତାଙ୍କ ଜୀବନୀ ଛନ୍ଦରେ ଲିପିବଦ୍ଧ ହୋଇ-ଅଛି । ବିଭିନ୍ନ ନାୟକ-ନାୟିକାଙ୍କ ଚରିତ୍ର ଭିତରେ ତତ୍କାଳୀନ ରୁଷର ବିଭିନ୍ନ ଚିନ୍ତାଧାରା ପ୍ରତିଫଳିତ । ତାଙ୍କର ରଚନାଶୈଳୀ ସତ୍ୟ-ଶିବ-ସୁନ୍ଦର ଉପରେ ପ୍ରତିଷ୍ଠିତ ହୋଇଥିବାରୁ ତାହା ଜଗତର ପ୍ରତ୍ୟେକ ଅଞ୍ଚଳର ଅଧିବାସୀଙ୍କୁ ବିମୁଗ୍ଧ କରେ । ଲିଓ ଟଲଷ୍ଟୟ ନିଜ ଦେଶବାସୀଙ୍କ ମୁହଁରେ ପ୍ରତ୍ୟେକ ଦେଶର ବିଭିନ୍ନ ସମସ୍ୟାକୁ ରୂପ ଦେଇଛନ୍ତି । ତେଣୁ ତାହା ଯେତେ ପୁରୁଣା ହେଲେ ବି ନୂଆ ଲାଗେ ।

'ଯୁଦ୍ଧ ଓ ଶାନ୍ତି'ର ପ୍ରକୃତ ଚରିତ୍ରଗୁଡ଼ିକ ହେଉଛନ୍ତି ରୁଷର ଜନସାଧାରଣ । ସେମାନେ ଫ୍ରାନ୍ସର ଆକ୍ରମଣରୁ ରୁଷକୁ ରକ୍ଷା କରିବାକୁ ଜୀବନମୂର୍ଚ୍ଛା ଲଢ଼ାଇ କରୁଛନ୍ତି । ସାମ୍ରାଜ୍ୟବାଦୀଙ୍କ ଆକ୍ରମଣ କବଳରୁ ନିଜ ଜନ୍ମଭୂମିକୁ ରକ୍ଷା କରିବାକୁ ଜନତା ଯେଉଁ ପ୍ରାଣମୂର୍ଚ୍ଛା ବିରୋଧ କରେ, ସେହି ବିରୋଧର ବାର୍ତ୍ତା ହିଁ ଉପନ୍ୟାସର ଛନ୍ଦେ ଛନ୍ଦେ ପ୍ରତିଫଳିତ । ଏହି ସଂଗ୍ରାମରେ ରୁଷ ଜନତାର ଜୟ ହେଲା । ଜନ୍ମଭୂମିର ସ୍ୱାଧୀନତା ବଜାୟ ରହିଲା ।

'ଯୁଦ୍ଧ ଓ ଶାନ୍ତି'ର ଅନ୍ୟତମ ଆକର୍ଷଣ ହେଉଛି ଲିଓ ଟଲଷ୍ଟୟଙ୍କର ଗଭୀର ଜୀବନ-ଦର୍ଶନ । ରହସ୍ୟମୟ ଜୀବନର ସୂକ୍ଷ୍ମାତିସୂକ୍ଷ୍ମ ବିଶ୍ଳେଷଣ କରି ସେ ବିଶ୍ୱଦରବାରରେ ଗୋଟିଏ ବିଶିଷ୍ଟ ଆସନ ଅଧିକାର କରିନେଇଛନ୍ତି । ଏଥିରୁ ତାଙ୍କର ଗଭୀର ଅଧ୍ୟୟନ ଓ ନିଷ୍ଠାପର ଚିନ୍ତାର ସମ୍ୟକ୍ ଧାରଣା କରିହୁଏ ।

ଲିଓ ଟଲଷ୍ଟୟଙ୍କର ପ୍ରକୃତି ବର୍ଣ୍ଣନା ଅତି ବିଚିତ୍ର ଧରଣର । ପୁସ୍ତକ ପଠନ ସଙ୍ଗେ ସଙ୍ଗେ ମନେ ହୁଏ ସତେ ଯେମିତି ପୁସ୍ତକବର୍ଣ୍ଣିତ ବନାନୀଭିତରେ ପାଠକ ସ୍ୱୟଂ ଗମନ କରୁଛନ୍ତି । କାନରେ ଝିଞ୍ଜିପତ୍ରର ଶବ୍ଦ, ପବନରେ ହିଲ୍ଲୋଳିତ ତରଙ୍ଗ ଖେଳୁଛି । ଆକାଶର ଦିଗନ୍ତବ୍ୟାପୀ ନୀଳିମା ଭିତରୁ ଲେଖକଙ୍କର କଣ୍ଠସ୍ୱର ଶୁଭୁଛି ।

ଏସବୁ ମିଶି ଗଢ଼ାହୋଇଛି ଯୁଦ୍ଧ ଓ ଶାନ୍ତି । ଥରଟିଏ ପଢ଼ିଲେ ସମସ୍ତ ବିଷୟ ସବୁଦିନପାଇଁ ମନେ ରହେ । ଲିଓ ଟଲଷ୍ଟୟଙ୍କ ବ୍ୟକ୍ତିତ୍ୱ ଆଗରେ ମନ ଲଇଁ ଯାଏ । ସେ ମାନବ ଭିତରେ ଅତିମାନବ ବୋଲି ମନେ ହୁଅନ୍ତି ।

## ଆନ୍ନାକାରିନା

ଟଲଷ୍ଟୟଙ୍କ ଅନ୍ୟତମ ପ୍ରସିଦ୍ଧ କୃତି 'ଆନ୍ନାକାରିନା' ଇତିହାସ ଓ ସାହିତ୍ୟର ଏକ ଆଶ୍ଚର୍ଯ୍ୟ ସମ୍ମିଶ୍ରଣ । ୧୮୭୩ ମସିହାରେ ଏହାର ଶୁଭାରମ୍ଭ । ଟଲଷ୍ଟୟ ଏହି ଉପନ୍ୟାସରେ ପ୍ରଥମେ ବଡଲୋକଘରର ବିବାହିତା ସ୍ତ୍ରୀ ଲୋକଙ୍କର ବିଚ୍ୟୁତି ଓ ବ୍ୟତିକ୍ରମର ପରିଣାମ ଦେଖାଇବାକୁ ମନସ୍ଥ କରିଥିଲେ; କିନ୍ତୁ ଲେଖନୀର ସ୍ୱଚ୍ଛନ୍ଦ ପ୍ରବାହ ଅବାଧ ଗତିରେ ଗଡ଼ିଚାଲିଲା । ନୂଆ ଭାବନା, ନୂଆ ଭାଷା ଜନ୍ମନେଲା । ସମାଜର ବିଭିନ୍ନ ସ୍ତରରେ ସମ୍ପୃକ୍ତ ଥିବା ବିରାଟ ଓ ବିଶିଷ୍ଟ ସମସ୍ୟାମାନ ବେଳ ଟେକିବାକୁ ଲାଗିଲେ ।

ଟଲଷ୍ଟୟଙ୍କ ପୂର୍ବର ପରିକଳ୍ପନା ବଦଳିଗଲା । ସେ ଏହି ପରିବର୍ତ୍ତିତ ପରିକଳ୍ପନାକୁ ଅସ୍ୱୀକାର କରିପାରିଲେ ନାହିଁ । ତାହାରିଫଳରେ ଆନ୍ନାକାରିନା ରୁଷିଆର ଶିକ୍ଷ-ପ୍ରଣାଳୀରେ ସମ୍ପୃକ୍ତ ଥିବା ଅସଲ ରକ୍ତ ପାଇ ସମୃଦ୍ଧ ହେବାକୁ ଲଗିଲା ।

'ଆନ୍ନାକାରିନା' ଟଲଷ୍ଟୟଙ୍କ ଏକ ବିଶିଷ୍ଟ ମନସ୍ତାତ୍ତ୍ୱିକ ଉପନ୍ୟାସ । କୁଶଳୀ କଳାକାରର କଳା ନେଇ ଓ ବିଦଗ୍ଧହୃଦୟର ଭାଷା ଦେଇ କଳ୍ପନାର ତାଜମହଲକୁ ସେ ରଙ୍ଗ ଦେଲେ । ଜ୍ୟୋସ୍ନା ଧୌତ ତାଜମହଲ ଅପେକ୍ଷା ଆହୁରି ସୁନ୍ଦର; ଆହୁରି କମନୀୟ ଦେଖାଗଲା । 'ଆନ୍ନାକାରିନା' ଟଲଷ୍ଟୟଙ୍କ ପ୍ର ଲେଖନୀରୁ ଜାତ ଜନ୍ମ ହୋଇଥିଲେ ବି ସେ ଆଉ ରୁଷିଆର ସମ୍ପତ୍ତି ହୋଇ ରହିପାରିଲା ନାହିଁ । ଟଲଷ୍ଟୟ ହେଲେ ସମଗ୍ର ବିଶ୍ୱର, ବିଶ୍ୱର ଅଗଣିତ ଜନତାର ।

ଗୋଟିଏ ବିପ୍ଳବୀ କନ୍ୟାର କାହାଣୀ ଏହି ଆନ୍ନାକାରିନା । ତାର ହସ ଓ ଦୀର୍ଘନିଃଶ୍ୱାସରେ ଉପନ୍ୟାସର ସମଗ୍ର ପୃଷ୍ଠା ଜୀବନ୍ତ ହୋଇଉଠିଛି । ପାଠକ ପଠନନିଷ୍ଠାରେ ନିମଗ୍ନ ଥିଲାବେଳେ ଏହି ତରୁଣୀଟି ଚୁପ୍‌ଚୁପ୍ କଥା କହିବାର ଶୁଣେ । ତା'ର ସୁଖ ଓ ଦୁଃଖର ସମ୍ମିଶ୍ରଣରେ ଗଢ଼ିଉଠିଥିବା ଆନ୍ନାକାରିନାର ସମସ୍ୟାବହୁଳ ପରିଛେଦ ପାଠକ ଆଖି ଆଗରେ ସ୍ୱପ୍ନାହତ ଆଶ୍ଚର୍ଯ୍ୟ ବାଢ଼ିଦିଏ । ତରୁଣୀଟି ନିର୍ଭୋଳ ସ୍ୱାଚ୍ଛନ୍ଦ୍ୟ ପାଇବାରେ ଆଶାୟିନୀ ହୋଇ ସମାଜର ବର୍ବରତାର ଶିକାର ହୋଇଛି । ସ୍ୱାଚ୍ଛନ୍ଦ୍ୟ ପରିବର୍ତ୍ତେ ସେ ପାଇଛି ଜନତା ପାଖରୁ ହୃଦୟଶୂନ୍ୟ ପରାଭବ । ତା' ଦେହର ରୂପ, ତା' ଅଙ୍ଗର ରଙ୍ଗ ସମାଜର ତଥାକଥିତ ବ୍ୟକ୍ତିମାନଙ୍କ ନିକଟରୁ ଜୀବନର ଶାନ୍ତ, ସବୁଜ ଆଶୀର୍ବାଦ ଖୋଜି ପାଇ ନାହିଁ । ଶେଷରେ ସେ ପରାସ୍ତ, ଶରାହତ ସୈନିକଭଳି ମାଟିରେ ମିଶି ଏକାକାର ହୋଇଯାଇଛି ।

'ଆନ୍ନାକାରେନା' ତତ୍‌କାଳୀନ ରୁଷର ସମ୍ଭ୍ରାନ୍ତ ପାରିବାରିକ ଜୀବନର ନୈତିକ ବିଶୃଙ୍ଖଳତାପୂର୍ଣ୍ଣ, ପତନୋନ୍ମୁଖୀ କାହାଣୀ । ରୁଷିଆର ପରିବର୍ତ୍ତିତ ବିଶୃଙ୍ଖଳା ଏହାର ପ୍ରତ୍ୟେକ ଛତ୍ରରେ ସୁସ୍ପଷ୍ଟ ଓ ମୂର୍ତ୍ତିମନ୍ତ । ପୁଞ୍ଜିବାଦର ପ୍ରଭୁତ୍ୱଫଳରେ ରୁଷିଆର ନୈତିକତା ଘୁରିଗଲା ହୋଇଗଲା । ତାରିଫଳରେ ଗୃହୀପରିବାର ଭିତରେ ଯେଉଁ ଅଭୂତପୂର୍ବ ପରିବର୍ତ୍ତନ ଦେଖାଗଲା, ଆନ୍ନକାରେନାର ଲେଖକ ଟଲଷ୍ଟୟ ସେସମ୍ବନ୍ଧରେ ଇତି ପୂର୍ବରୁ ଅପରିଚିତ ଥିଲେ ।

ଏହିସମୟରେ ରୁଷିଆରେ ପରିବର୍ତ୍ତନର ଅଶାନ୍ତ ଝଡ଼ ବହୁଥାଏ । ସମାଜର ସ୍ତରେ ସ୍ତରେ ଏହି ପରିବର୍ତ୍ତନ ପକ୍ଷ ବିସ୍ତାର କରୁଥାଏ । ଯୁଗମାନବ ଟଲଷ୍ଟୟଙ୍କ କଲମରେ ତାର ବହୁସ୍ୱରର ଅନୁଭୂତ ଅଜାଡ଼ି ହୋଇ ପଡ଼ିଲା । ଲେଖକଙ୍କର ଦୃଷ୍ଟିକୋଣ ବଦଳିଗଲା । ନାୟକ-ନାୟିକାଙ୍କ ଚରିତ୍ର ଚିତ୍ରଣଭିତରେ ସାମାଜିକ ଓ ଧର୍ମସମ୍ବନ୍ଧୀୟ ଜୀବଧାରାକୁ ସେ ଭିନ୍ନ ଦୃଷ୍ଟିରୁ ବିଶ୍ଳେଷଣ କରିବାକୁ ଲାଗିଲେ ।

ତାଙ୍କର ପରବର୍ତ୍ତୀ ଉପନ୍ୟାସ ଓ ନାଟକ ପ୍ରଭୃତିରେ ସେ ଦେଶର ଶାସକ-ସମାଜକୁ ତୀବ୍ର ଆକ୍ରମଣ କରିଛନ୍ତି । ଶୋଷିତ, ଅତ୍ୟାଚାରିତ ଗୃହୀ-ପରିବାରମାନଙ୍କପ୍ରତି ସହାନୁଭୂତି ଦେଖାଇ ତାଙ୍କର ଆତ୍ମା ଉତ୍ତେଜିତ ହୋଇ ଉଠିଛି ।

## ରିସାରେକ୍‌ସନ୍

'ରିସାରେକ୍‌ସନ୍' ଲିଓ ଟଲଷ୍ଟୟଙ୍କର ଅନ୍ତିମ ଜୀବନର ଏକ ବଳିଷ୍ଠ ଉପନ୍ୟାସ । ଏହାକୁ ଶେଷ କରିବାକୁ ତାଙ୍କୁ ସୁଦୀର୍ଘ ଦଶ ବର୍ଷ ସମୟ ଲାଗିଥିଲା । ଊନବିଂଶ ଶତାବ୍ଦୀର ଶେଷ ଦଶକର ଏହା ଏକ ଜୀବନ୍ତ ଉପନ୍ୟାସ । ସେ ସମୟର ସମସ୍ତ ଜଟିଳ ସମସ୍ୟାଗୁଡ଼ିକୁ ଅନୁଧ୍ୟାନ କରି

ଲେଖକ ଏହି ବଳଷ୍ଠ ଉପନ୍ୟାସଟିରେ ଲିପିବଦ୍ଧ କରିଯାଇଛନ୍ତି । ଶାସକ-ଗୋଷ୍ଠୀର ପ୍ରତ୍ୟେକ ଦୁର୍ବଳତାକୁ ସେ ଏଥିରେ ରୂପ ଦେଇପାରିଛନ୍ତି । ବୁର୍ଜୁଆ, ଗୀର୍ଜାର ନିମ୍ନମୁଖୀ ନୈତିକତାକୁ ଲକ୍ଷ୍ୟ କରି ତାଙ୍କର ଲେଖମା ବିଷ ଉଦ୍‌ଗାର କରିଛି । ରିସାରେକ୍‌ସନ୍‌ର ଭାଷା ଓ ସମାଲୋଚନା ତାଙ୍କ ପୂର୍ବବର୍ତ୍ତୀ ଲେଖାମାନଙ୍କରେ ସେତେ ଅଧିକଭାବରେ ଦେଖାଯାଏ ନାହିଁ । ଏଥିରେ ଶାସକ-ଗୋଷ୍ଠୀପ୍ରତି ତାଙ୍କ ଅନ୍ତରର ନବଉତ୍ଥିତ ଅଂଶରୁ ଘୃଣା ଓ ବିଦ୍ୱେଷ ମନୋଭାବ ଜୀବନ୍ତଭାବରେ ଫୁଟିଉଠିଛି । କଲମରେ ନିଆଁ ହୁଳା ପୂରାଇ ଯେ ସମସ୍ତ ଅତ୍ୟାଚାରୀଙ୍କୁ ସିଧାସଳଖ ପ୍ରତିବୋଧ କରିଛନ୍ତି । ନିଃସହାୟ କୃଷକ ଓ ସରଳମତି ପ୍ରଜାବର୍ଗଙ୍କ ପ୍ରତି ତାଙ୍କର ସ୍ୱାଭାବିକ ସହାନୁଭୂତିର ଅନ୍ତ ନାହିଁ ।

ଏ ଲେଖା ପ୍ରକାଶ ପାଇବାପରେ ସେ ଶାସକଗୋଷ୍ଠୀର ଘୃଣା ଓ ତାଚ୍ଛଲ୍ୟଭାବର ସମ୍ମୁଖୀନ ହୋଇଥିଲେ, ଏପରି କି ତାଙ୍କୁ ଏହି ଧନାଢ୍ୟ ଗୋଷ୍ଠୀ ଭିତରୁ ବାସନ୍ଦ କରିଦିଆଯାଇଥିଲା ; କିନ୍ତୁ ଯୁଗମାନବ ଟଲଷ୍ଟୟ ଏହି ବାସନ୍ଦପ୍ରତି ଭ୍ରୂକ୍ଷେପ ନ କରି ନିଜ କର୍ତ୍ତବ୍ୟପଥରେ ଅଗ୍ରସର ହୋଇଥିଲେ ।

## ଟଲଷ୍ଟୟଙ୍କ ମାନବିକ ଚରିତ୍ର

ଟଲଷ୍ଟୟଙ୍କ ନୀରବ ତାଏରୀ ତାଙ୍କ ହୃଦୟର ଅମାୟିକ କଥା କହେ । ପଦଦଳିତ, ନିଷ୍ପେଷିତ ଜନତାର ଦୁଃଖ ଦାରିଦ୍ର୍ୟର ଲୁହବୋଳା କଥାକୁ ସେ ଦିନ-ରାତି ବସି ଚିନ୍ତା କରୁଥିଲେ । ସେ ଏହି ଦରିଦ୍ର ଜନତାଙ୍କ-ପାଇଁ ଜୀବନର ଅର୍ଦ୍ଧାଧିକ ସମୟ ଚିନ୍ତା କରିଛନ୍ତି ଓ ଲୋକଙ୍କର ସହାନୁଭୂତି ପାଇବାପାଇଁ ଲେଖମା ଚଳାଇଛନ୍ତି । ସାଧ୍ୟମୁତାବକ ସେମାନଙ୍କୁ ସାହାଯ୍ୟ କରି ଆନନ୍ଦ ପାଇଛନ୍ତି । ତାଙ୍କ ଡାଏରୀଭିତରୁ

ବାହାରେ, ଏଇ ବଣ୍ଟଜକ, ମନ୍ତ୍ରୀ ଓ ଜାର୍‌ମାନେ ହେଉଛନ୍ତି ଜାତିପକ୍ଷରେ ଏକ ଦଳବଦ୍ଧ ଦସ୍ୟୁ । ସେମାନେ ଅର୍ଥଲାଳସାର ବଶବର୍ତ୍ତୀ ହୋଇ ସମାଜକୁ ତିଳେ ତିଳେ ଲୁଣ୍ଠନ କରୁଛନ୍ତି । ସେମାନେ ପ୍ରତାରକ ଓ ହତ୍ୟାକାରୀ ବ୍ୟକ୍ତିତ ଆଉ କିଛି ନୁହନ୍ତି । ବିବେକବିହୀନ ପଶୁପରେ ସେମାନେ ସମାନ ।

ସତ୍ୟ ଓ ଶାନ୍ତିପ୍ରତି ତାଙ୍କର ହୃଦୟର ଆନ୍ତରିକ ସମର୍ଥନ ଥିଲା । ସତ୍ୟ, ଶିବ, ସୁନ୍ଦରକୁ ସେ ଦେବତାଭଳି ଭକ୍ତି କରୁଥିଲେ ।

ଟଲଷ୍ଟୟ ମୁମୂର୍ଷୁ ନାଗରିକମାନଙ୍କପାଇଁ ଖାଲି ଚିନ୍ତା କରି ବା କେତୋଟି ଲେଖା ଲେଖି ସନ୍ତୁଷ୍ଟ ହୋଇ ନ ଥିଲେ । ସେ ଥିଲେ ପରାକ୍ରମଶାଳୀ ସଂଗ୍ରାମୀ ବ୍ୟକ୍ତି । ଗରୀବଙ୍କ ଦୁଃଖ ଦେଖିଲେ ନୀରବ ନ ରହି ସେ ତା'ର ପ୍ରତିବାଦ କରୁଥିଲେ । ଜୀବନର ଶେଷମୁହୂର୍ତ୍ତପର୍ଯ୍ୟନ୍ତ ଦୁର୍ବଳତା ତାଙ୍କୁ ଗ୍ରାସ କରି ନାହିଁ କି ସେ ସ୍ଥବିର ହୋଇ ବସିଯାଇ ନାହାନ୍ତି । ଯାହା କରିବା ଉଚିତ ବୋଲି ନିର୍ଦ୍ଧାରଣ କରିଥିଲେ ସେହି ଲକ୍ଷ୍ୟ ପୂରଣସକାଶେ ଖୁବ ଅସୁସ୍ଥ ଅବସ୍ଥାରେ ବି ସଂଗ୍ରାମ କରିଯାଇଛନ୍ତି ।

ଶ୍ରମଜୀବୀ ଜନତା ଟଲଷ୍ଟୟଙ୍କ ଆଖିରେ ଦେବତାତୁଲ୍ୟ । ସେ ସେମାନଙ୍କୁ ଅନ୍ତର ଦେଇ ଭଲପାଉଥିଲେ । ସେ ଉତ୍ତମରୂପେ ହୃଦୟଙ୍ଗମ କରିଥିଲେ ଯେ ଏହି ଶ୍ରମଜୀବୀ ଅନ୍ତର୍ଭୁକ୍ତ କୃଷିକୁଳ ଯଦି ନିଶ୍ଚେଷ୍ଟ ହୋଇ ପଡ଼ନ୍ତି, ତେବେ ରାଜ୍ୟରେ ଖାଦ୍ୟ-ପେୟ ଓ ପୋଷାକ-ପରିଚ୍ଛଦର ଅଭାବ ଅନଟନ ଏକ ଭୟଙ୍କର ପରିସ୍ଥିତି ସୃଷ୍ଟି କରିବ । ଶାସକଗୋଷ୍ଠୀର ସୌଖୀନ ବିଳାସ ଧୂଳିଧୂସରିତ ହୋଇ ଚୂରମାର ହୋଇଯିବ । ସେମାନେ ସ୍ୱଇଚ୍ଛାରେ ରାଜ୍ୟର ସମସ୍ତଙ୍କୁ ଖାଦ୍ୟ ଓ ବସ୍ତ୍ର ଯୋଗାଇବାର ଶ୍ରେଷ୍ଠ ଦାୟିତ୍ୱ ଗ୍ରହଣ କରିଛନ୍ତି ବୋଲି ଦେଶ ଓ ଜାତି ବଞ୍ଚିଛି । ସମସ୍ତ ଅକଥମାୟୁ ଅତ୍ୟାଚାରକୁ ମୁଣ୍ଡପୋତି ମାନିନେଇଛନ୍ତି ବୋଲି ଦେଶର ଶାସକଗୋଷ୍ଠୀ ନିର୍ଭୀକ

ଅତ୍ୟାଗ୍ରହ ଚଳାଇଛନ୍ତି । ଏ ଜନତା ଜାଗିଉଠିଲେ ପୁଞ୍ଜିବାଦୀର ସ୍ୱପ୍ନ ଭଙ୍ଗ ହେବ ।

ଖାଲି ଶ୍ରମିକ-ପରିବାର ନୁହେଁ, ସମସ୍ତ ମଣିଷ-ଜାତିକୁ ସେ ସ୍ନେହ ଓ ଶ୍ରଦ୍ଧା କରୁଥିଲେ । ଛୋଟ ଛୋଟ ଶିଶୁମାନଙ୍କ ପ୍ରତି ତାଙ୍କର ଅନେକ ଆକର୍ଷଣ ଥିଲା । ସେମାନଙ୍କ ସରଳ ମୁହଁରେ ଅନାବିଳ ହସଧାଡ଼ିଏ ଦେଖିଲେ ସେ ପରମ ଆନନ୍ଦ ଲାଭ କରୁଥିଲେ ; କିନ୍ତୁ ମଣିଷଭିତରେ ଅମଣିଷ-ପଣିଆଟା ହିଁ ତାଙ୍କୁ ବିଶେଷଭାବରେ ବିଚଳିତ କରୁଥିଲା । ନାଗରିକ ଜୀବନ୍ୟ-ଭଳି ପୁଞ୍ଜିବାଦୀର ବିରୁଦ୍ଧ ପ୍ରତିବାଦ ସତ୍ତ୍ୱେ ଅଣ୍ଟାଭିଡ଼ି ତା'ର ପ୍ରତିକାର କରୁଥିଲେ ।

## ବିପ୍ଳବୀ ଟଲଷ୍ଟୟ

ଲିଓ ଟଲଷ୍ଟୟ ଶକ୍ତିଶାଳୀ ପୁଞ୍ଜିବାଦୀମାନଙ୍କ ସଙ୍ଗରେ ଲଢ଼େଇ କରିବାକୁ ତୀକ୍ଷ୍ଣ ଆୟୁଧରୂପେ ବ୍ୟବହାର କରୁଥିଲେ ତାଙ୍କର ପରାକ୍ରମୀ କଲମକୁ । ଏମାନଙ୍କ ବିରୁଦ୍ଧରେ ବାକ୍ୟପରେ ବାକ୍ୟ, ପୃଷ୍ଠାପରେ ପୃଷ୍ଠା ଦେଇ ସେ ମହତ୍ତ୍ୱ ବିଷ ଢାଳି ତା'ର ସମ୍ମୁଖୀନ ହେବାକୁ ଅମଣିଷ ଶାସକଗୋଷ୍ଠୀଙ୍କୁ ଆହ୍ୱାନ ଜଣାଉଥିଲେ । ରୁଷିଆର ୧୯୦୫ ବିପ୍ଳବ ତାଙ୍କ ଜୀବନକାଳଭିତରେ ଏକ ଉଲ୍ଲେଖଯୋଗ୍ୟ ଘଟଣା । ଦଶ କୋଟି ବିପ୍ଳବୀ କୃଷୀଙ୍କର ପକ୍ଷ ସମର୍ଥନ କରିବା ସଙ୍ଗେ ସଙ୍ଗେ ତାଙ୍କର ସ୍ୱାର୍ଥସିଦ୍ଧିଲାଗି ସେ ପ୍ରାଣାନ୍ତକ ଚେଷ୍ଟା କରୁଥିଲେ । ସ୍ୱଇଚ୍ଛାରେ ସେ ସେମାନଙ୍କ ପ୍ରତିନିଧିତ୍ୱ ଗ୍ରହଣ କରିବାକୁ ପଶ୍ଚାତ୍‌ପଦ ହୋଇ ନ ଥିଲେ । କୃଷୀକୁଳଙ୍କ ପକ୍ଷରେ ଯାହା ପ୍ରତିକୂଳ ତା'ର ବିରୁଦ୍ଧରେ ସେ ଆଖିବୁଜା ଆକ୍ରମଣ କରୁଥିଲେ ।

କିନ୍ତୁ ଏହି ୧୯୦୫ ବିପ୍ଳବକୁ ଅମାନୁଷିକଭାବରେ ଦମନ କରାହେଲା । ଶ୍ରମଜୀବୀଙ୍କର ଅବସ୍ଥା ସେତେବେଳେ ଖୁବ୍ ସାଂଘାତିକ । ଏହି

ପରଜନ୍ମ ଟଲଷ୍ଟୟଙ୍କ ମାନସିକ ଯନ୍ତ୍ରଣାକୁ ଅତ୍ତମାତ୍ରାରେ ବଢ଼ାଇଦେଲା । ଜାର୍ ସରକାରଙ୍କ ନିର୍ମମ ହତ୍ୟାଲୀଳାକୁ ଲକ୍ଷ୍ୟ କରି ସେ କେତୋଟି ଅଗ୍ନିମୁଖୀ ପ୍ରବନ୍ଧ ଲେଖିଲେ । 'ମୁଁ ନୀରବ ରହିପାରେ ନା' ( I Can't keep silent ) ଲିଓଟଲଷ୍ଟୟଙ୍କର ଏକ ଶକ୍ତିଶାଳୀ ପ୍ରତିବୋଧର ବାର୍ତ୍ତା । ଜାର୍ ସରକାର ବିପ୍ଳବକୁ ଦବାଇଦେବାପାଇଁ କେତୋଟି ବିପ୍ଳବୀ ନେତାଙ୍କୁ ମୃତ୍ୟୁଦଣ୍ଡରେ ଦଣ୍ଡିତ କରିଥିବାରୁ ଲିଓ ଟଲଷ୍ଟୟ ଏହି ପ୍ରବନ୍ଧମାଧ୍ୟମରେ ତାଙ୍କର ବିପ୍ଳବୀମନକୁ ପରିପ୍ରକାଶ କରିଥିଲେ । ସେ ଲେଖିଥିଲେ, "ଏଭଳି-ଭାବରେ ବଞ୍ଚିରହିବା ଅସମ୍ଭବ । ଏଭଳିଭାବରେ ମୁଁ ବଞ୍ଚିରହିପାରେ ନା । ଭବିଷ୍ୟତରେ ମଧ୍ୟ ପାରିବ ନାହିଁ । ସେଇଥିପାଇଁ ମୁଁ ଏହା ଲେଖୁଛି । ମୋର ସମସ୍ତ ଶକ୍ତି ଦେଇ ମୁଁ ଯାହା ଲେଖୁଛି ରୁଷିଆରେ ଓ ରୁଷିଆ ବାହାରେ ପ୍ରଚାର କରିବ । ତଦ୍ଦ୍ୱାରା ଦୁଇଟି କଥାରୁ ଗୋଟିଏ ହେବ-ହୁଏତ ଏହି ଅମାନୁଷିକ କାର୍ଯ୍ୟକଳାପର ପରିସମାପ୍ତି ଘଟିବ, ଅଥବା କୋଡ଼ିଏ କି ବାଇଶ ଜଣ ରୁଷୀଙ୍କୁ ଯେମିତି କବର ଦିଆଗଲା, ମୋତେ ବି ସେମିତି କବର ଦିଆଯିବ··· ·।" ଏ ଭାଷାର ପରିପ୍ରକାଶ କେବଳ ଏକ ବିପ୍ଳବୀ ଲେଖକଙ୍କର କଲମରେ ସମ୍ଭବ ।

## ମହାତ୍ମା ଟଲଷ୍ଟୟ

ଜମିଦାର—ପୁତ୍ରରୂପେ ଜୀବନକୁ ସେ ବିଳାସ-ବ୍ୟସନରେ ନିମଗ୍ନ କରି ଗୋଟିଏ ପୁଞ୍ଜିବାଦୀର ସରସ, ସାର୍ଥକ ସ୍ୱପ୍ନ ଦେଖିପାରିଥାନ୍ତେ । ଶାସକକୁ ସନ୍ତୁଷ୍ଟ କରି ସେ ଅବସରରେ କାଳଯାପନ କରିପାରିଥାନ୍ତେ ; କିନ୍ତୁ ମହାତ୍ମା ଟଲଷ୍ଟୟଙ୍କୁ ବିଳାସ ଓ ବ୍ୟସନ କାଳ କ୍ରମେ ଉତ୍କଟ ବିଷତୁଲ୍ୟ ମନେହେଲା । ନିଜ ଚତୁଃପାର୍ଶ୍ୱରେ ହୁ ହୁ ହୋଇ ଜଳୁଥିବା ଦାରିଦ୍ର୍ୟର ନିଷ୍ଠୁର ଅଗ୍ନି ତାଙ୍କର ମହନୀୟ ମନକୁ ଥରକେ ଥରକେ ଆଘାତ କଲା । ସେ ସୁଦୃଶ୍ୟ ଉଆସଭିତରେ ଶୋଇରହି ଶାନ୍ତି ଓ ସୁଖର ସ୍ୱପ୍ନ ଦେଖି-

ପାଇଲେ ନାହିଁ । କର୍ତ୍ତବ୍ୟ ତାଙ୍କୁ ଆହ୍ୱାନ କଲା । ଶାସକର ନାଲି ଆଖି କୌଣସି ପ୍ରତିବନ୍ଧକ ଦେଇପାରିଲା ନାହିଁ । ନିଜ ଚତୁଃପାର୍ଶ୍ୱରେ ବସା ବାନ୍ଧି ରହିଥିବା ନିରନ୍ନ କୃଷୀପରିବାରଭିତରେ ସେ ସୁଖ ଓ ଶାନ୍ତିରେ ଜୀବନ ଯାପନ କରିବାକୁ ପାପ ବୋଲି ଭାବୁଥିଲେ । ସେଥିପାଇଁ ଜନ୍ମମାଟି ୟାସନାୟା ପୋଲିଆନା ତାଙ୍କୁ ଆଉ ପୂର୍ବର ଆନନ୍ଦ ଦେଇପାରିଲା ନାହିଁ । ଚେରିଚିତ ମାଟିର ମାୟା କାଟି ଅଜ୍ଞାତବାସ କରିବାକୁ ସେ ଅନେକ-ସମୟରେ ଚିନ୍ତା କରୁଥିଲେ । ତାଙ୍କ ତାଏରୀ ମାନସିକ ଦ୍ୱନ୍ଦ୍ୱ ଓ ଅବ୍ୟବସ୍ଥିତ ଆତ୍ମାର କ୍ରନ୍ଦନ—ଇତିହାସ କହେ । ସେ ଲେଖିଥିଲେ, "ମୋର ଗୃହ ଦ୍ୱାରରେ ଅଭାବ-ଅନଟନର ବିଭୀଷିକା ଖେଳୁଛି ଅଥଚ ମୁଁ ପ୍ରାଚୂର୍ଯ୍ୟ-ଭିତରେ ବୁଡ଼ିରହିଛି । ଏହା ହିଁ ମୋତେ ଅଧିକ ଯନ୍ତ୍ରଣା ଦେଇପକାଉଛି । ପିଲେ-ଲୋକ ମଉଜରେ ଖାଇପିଇ, ସୁନ୍ଦର ପୋଷାକ ପିନ୍ଧି ଖାଲି ଦାବୀ କରୁଛନ୍ତି । ଗୃହର ନୌକରମାନେ ସେମାନଙ୍କ ଆଦେଶକୁ କାନେଇ-ନେଉଛନ୍ତି । ଏଭଳି ପରିସ୍ଥିତିରେ ଏମାନଙ୍କ ସଙ୍ଗେ ସହଯୋଗ କରି ଏହାର ବିରୋଧ ନ କରିବା ମୋ'ପକ୍ଷରେ ଅତ୍ୟନ୍ତ ଦୁଃଖର ବିଷୟ ହେବ ।"

## ଶେଷ ଜୀବନ

ଟଲଷ୍ଟୟଙ୍କ ଶେଷଜୀବନ ଅତ୍ୟନ୍ତ କରୁଣ । ସତେ ଯେମିତି ଗୋଟିଏ ମହାଦୀପ ପରକୁ ଆଲୋକ ଦେବାପାଇଁ ଜଳି ଜଳି ନିଃଶେଷ ହୋଇଗଲା । ଜୀବନଟି ସାରା ସେ ଖାଲି ପରପାଇଁ ଜଳିଛି । ନିଜର ସୁଖ-ସ୍ୱାଚ୍ଛନ୍ଦ୍ୟପ୍ରତି କେବେହେଲେ ଦୃଷ୍ଟି ଦେଇ ନାହିଁ । ଏଭଳି ଆତ୍ମତ୍ୟାଗର ଦୃଷ୍ଟାନ୍ତ ଏ ପୃଥିବୀରେ ଏକାନ୍ତ ଦୁର୍ଲଭ । ଶେଷଦିନଗୁଡ଼ିକ ନିର୍ଜନ ଓ ଶାନ୍ତିରେ କଟାଇବାକୁ ସେ ୧୯୧୦ ମସିହା ଅକ୍ଟୋବର ମାସରେ ତାଙ୍କର ଅତିପ୍ରିୟ ୟାସନାୟା ପୋଲିଆନା ପରିତ୍ୟାଗ କଲେ । ସେ ଆଉ ଥରେ ୟାସନାୟା ପୋଲିଆନାର ମୁଖ ଦର୍ଶନ କରି ନାହାନ୍ତି । ଅତିପ୍ରିୟ ଉଦ୍ୟାନ,

ସରଳ ବନ୍ଧାମାର ଶୋଭାସମ୍ପଦ ଓ ପରିଚିତ ଶ୍ରଦ୍ଧେୟ ପ୍ରିୟ ପଡ଼ୋଶୀଙ୍କ ସ୍ନେହ ଏଡ଼ି ସେ ପ୍ରବାସୀ ହେଲେ; କାରଣ, ସ୍ବାସନାପୂର୍ଣ୍ଣ ପୋଷାକର ପ୍ରାଚୁର୍ଯ୍ୟ ତାଙ୍କୁ ଅନେକ ଅଶାନ୍ତ କଲା ।

ବୟାଅଶୀ ବର୍ଷ ବୟସ୍କ ବୃଦ୍ଧ ଟଲଷ୍ଟୟ ଗୋଟିଏ ତୃତୀୟଶ୍ରେଣୀ ଯାତ୍ରୀ ହିସାବରେ ତାଙ୍କର ଶେଷଯାତ୍ରା ଆରମ୍ଭ କଲେ ; କିନ୍ତୁ ବାଟରେ ନିମୋନିଆ ରୋଗରେ ଆକ୍ରାନ୍ତ ହୋଇ ନିତାନ୍ତ ଅସହାୟଭାବରେ ଜଣେ ଷ୍ଟେସନ ମାଷ୍ଟରଙ୍କ ଆଶ୍ରୟ ଗ୍ରହଣ କରିବାକୁ ବାଧ୍ୟ ହେଲେ । ସେଇଠି ୧୯୧୦ମସିହା ନଭେମ୍ବର କୋଡ଼ିଏ ତାରିଖରେ ତାଙ୍କର ଜୀବନ-ଦୀପ ଲିଭିଗଲା । ରୁଷର ଗୋଟିଏ ସ୍ୱାଧୀନଚେତା ନିର୍ଭୀକ ସୈନିକ ଜୀବନସାରା ଜନତାପାଇଁ ସଂଗ୍ରାମ କରି ଶେଷରେ ମୃତ୍ୟୁର କୋମଳ କୋଳରେ ଆଶ୍ରୟ ଗ୍ରହଣ କଲା ।

ଜୀବଦ୍ଦଶାରେ ଥିଲାବେଳେ ନିଜ ଡାଏରୀରେ ସେ ଲେଖିଥିଲେ ଯେ, ତାଙ୍କ ମୃତ୍ୟୁପରେ କବର ଦେଲାବେଳେ କୌଣସି ଉତ୍ସବ ହେବ ନାହିଁ । ଶବାଧାରଟି କଫନ୍ କାଠରେ ତିଆରିହେବ ଓ ଯେ ଚାହିଁବେ ସେ ଏହି କଫିନ୍‌ଟିକୁ ଝରଣାପାଖର ବନାନୀକୁ ନେଇଯିବେ । 'ଏଇଥିରୁ ହିଁ ତାଙ୍କର ସରଳ ଆତ୍ମାର ସମ୍ୟକ୍ ପରିଚୟ ମିଳେ । ଶେଷରେ ତାଙ୍କର ଏହି ଅନ୍ତିମ ଇଚ୍ଛା ପୂରଣ ହେଲା । ସେ ଏକ ଆଡମ୍ବରବିହୀନ ଶବସତ୍କାର ; କିନ୍ତୁ ଏହି ବିଦାୟ ମାନବକୁ ରୁଷ ଓ ପୃଥିବୀର ପ୍ରତ୍ୟେକ ଚିନ୍ତାଶୀଳ ବ୍ୟକ୍ତି ମନେରଖିବେ ।

ଟଲଷ୍ଟୟଙ୍କ ନଶ୍ୱରଦେହ ବିଦାୟ ନେଲେ ବି ଅମର ଆତ୍ମାର ପ୍ରତିଧ୍ୱନି ଶୁଭେ । ମହାମାନବ ମରିପାରେ ନା । ମୃତ୍ୟୁ ତାକୁ ଅମର କରେ । ମହାତ୍ମା ଟଲଷ୍ଟୟଙ୍କ ଜୀବନରେ ତାହା ହିଁ ଘଟିଯାଇଛି ।

# ବନ୍ଧୁ ଟଲଷ୍ଟୟ

ଟଲଷ୍ଟୟ ସମଗ୍ର ପୃଥିବୀର ବନ୍ଧୁ ଥିଲେ । ଚିଠିର ମାଧ୍ୟମରେ ସେ ବିଭିନ୍ନ ଦେଶବାସୀଙ୍କ ସହିତ ବନ୍ଧୁତା ସୃଷ୍ଟି କରିଥିଲେ । ଅଧିକାଂଶ ସମୟରେ ପୃଥିବୀର ବିଭିନ୍ନ ସ୍ଥାନରୁ ଅସଂଖ୍ୟ ଚିଠି ଓ ପରିଦର୍ଶକବୃନ୍ଦ ଆସି ୟାସନାୟା ପୋଲ୍ୟାନା ସଙ୍ଗେ ସମ୍ୟକ୍ ସମ୍ବନ୍ଧ ପ୍ରତିଷ୍ଠା କରି ଯାଇଥିଲେ ।

ଭାରତୀୟ ଦର୍ଶନ ପ୍ରତି ତାଙ୍କର ଅନେକ ଆକର୍ଷଣ ଥିଲା । ଏହି ଆକର୍ଷଣ ତାଙ୍କର ଉଣେଇଶ ବର୍ଷ ବୟସରୁ ହିଁ ଜନ୍ମଲାଭ କରିଥିଲା । ଭାରତର ଜଣେ ବୌଦ୍ଧ ଭିକ୍ଷୁ ତାଙ୍କୁ ଭାରତବର୍ଷ ଓ ତା'ର ଅଧିବାସୀଙ୍କ ସମ୍ବନ୍ଧରେ ଅନେକ କଥା କହିଯାଇଥିଲେ । ସେହିଦିନଠାରୁ ସେ ଭାରତୀୟ ଦର୍ଶନ ଓ ଧର୍ମଶାସ୍ତ୍ରରେ ଯଥେଷ୍ଟ ଜ୍ଞାନ ଲାଭ କରିବାପାଇଁ ଗଭୀର ଅଧ୍ୟୟନ କରିଆସିଛନ୍ତି । ବହୁ ଭାରତୀୟ ଦର୍ଶନଗ୍ରନ୍ଥକୁ ଇଂରାଜୀରୁ ରୁଷ୍ ଭାଷାରେ ଅନୁବାଦ କରି ରୁଷ ଜନସାଧାରଣଙ୍କ ନିକଟରେ ପରିବେଷଣ କରିଯାଇଛନ୍ତି । ଭାରତରେ ଇଂରେଜ ଜାତିର ଅଯଥାର୍ଥ ଔପନିବେଶିବାଦକୁ ସେ ଅତି ଅସହିଷ୍ଣୁ ଭାଷାରେ ବିରୋଧ କରିଆସିଛନ୍ତି ।

ମହାତ୍ମା ଗାନ୍ଧୀ ଓ ମହାନ୍ ରୁଷୀୟ ଲେଖକ ଟଲଷ୍ଟୟଙ୍କ ଚିନ୍ତାଧାରାରେ ଅଦ୍ଭୁତ ସମନ୍ୱୟ ପରିଲକ୍ଷିତ ହୋଇଥାଏ । ମହାତ୍ମା ଗାନ୍ଧୀ ତାଙ୍କର ଅହିଂସାତ୍ମକ ରାଜନୀତିପାଇଁ ପୃଥିବୀବିଖ୍ୟାତ ; କିନ୍ତୁ ମହାତ୍ମା ଟଲଷ୍ଟୟ ତାଙ୍କର ବଳିଷ୍ଠ ଲେଖନୀଯୋଗୁ ସର୍ବଜନ ବିଦିତ । ଏ ଉଭୟଙ୍କ ପତ୍ରାଳାପରେ ଦୁଇଟି ମହାପୁରୁଷଙ୍କ ଜୀବନର ସୁସ୍ପଷ୍ଟ ପରିଚୟ ମିଳିଥାଏ । ମାନବଜାତିପ୍ରତି ଗଭୀର ଶ୍ରଦ୍ଧାରେ ଉଭୟଙ୍କ ଅନ୍ତର ପରିପୂର୍ଣ୍ଣ । ଦୁହେଁ ଦୁହିଁଙ୍କୁ ଚିଠିଲେଖି ଭାବର ଆଦାନ ପ୍ରଦାନ କରିବା ସଙ୍ଗେସଙ୍ଗେ ପରସ୍ପରକୁ

ଉତ୍ତମରୂପେ ବୁଝିବାକୁ ଚେଷ୍ଟା କରିଛନ୍ତି । ଅନ୍ୟାୟ ଓ ଅତ୍ୟାଚାରକୁ ସହ୍ୟ କରି ନ ପାରି ଯଥାଶକ୍ତି ପ୍ରତିରୋଧ କରିଛନ୍ତି ।

ଭାରତୀୟ ସାହିତ୍ୟ ଓ ଦର୍ଶନ ପ୍ରତି ମହାତ୍ମା ଟଲଷ୍ଟୟଙ୍କ ଅନେକ ଆକର୍ଷଣ ଥିଲା । ବୌଦ୍ଧଶାସ୍ତ୍ର, ବେଦ, ଉପନିଷଦ ସଙ୍ଗେସଙ୍ଗେ ମହାଭାରତ, ରାମାୟଣ ଓ ପଞ୍ଚତନ୍ତ୍ର ପ୍ରଭୃତି ମୌଳିକ ହିନ୍ଦୁଗ୍ରନ୍ଥକୁ ସେ ତନ୍ନତନ୍ନ କରି ପାଠ କରି ତାର ମୂଳନୀତି ପ୍ରତି ଆକୃଷ୍ଟ ହୋଇଥିଲେ । ସ୍ୱାମୀ ବିବେକାନନ୍ଦ, ଶଙ୍କରାଚାର୍ଯ୍ୟ ପ୍ରଭୃତିଙ୍କ ଦାର୍ଶନିକ ମତବାଦ ତାଙ୍କ ହୃଦୟରେ ଆନ୍ଦୋଳନ ସୃଷ୍ଟି କରିଥିଲା । ୟାସନାୟା ପୋଲିୟାନାର ସୁରକ୍ଷିତ ଭାରତୀୟ ଗ୍ରନ୍ଥସବୁ ଟଲଷ୍ଟୟଙ୍କ ଭାରତପ୍ରତି ଆକର୍ଷଣ କଥା ମନେ ପକାଇଦିଏ । ଭାରତର ଇତିହାସ, ସାହିତ୍ୟ ଓ ଦର୍ଶନଶାସ୍ତ୍ରରେ ନୀରବ ପାଠକ ଟଲଷ୍ଟୟଙ୍କର ବିଭିନ୍ନ ମନ୍ତବ୍ୟ ତାଙ୍କର ଗଭୀର ମନୋନିବେଶ କଥା ପ୍ରମାଣ କରିଦିଏ ।

ଟଲଷ୍ଟୟ ଜୀବନକାଳଭିତରେ ଶହଶହ ବିଜ୍ଞାନୀ, ସାମ୍ବାଦିକ, ଛାତ୍ର ଓ ସମାଜସେବୀମାନଙ୍କ ସହିତ ପତ୍ରର ମାଧ୍ୟମରେ ସହଯୋଗ ରକ୍ଷା କରିଥିଲେ । ଅନେକଙ୍କ ସମସ୍ୟାକୁ ବିଚାରବନ୍ତ ସହଯୋଗୀର ମନ ନେଇ ବିଶ୍ଳେଷଣ କରୁଥିଲେ । ଆବଶ୍ୟକବେଳେ ଉପଦେଶ ଓ ଉତ୍ସାହ ପ୍ରଦାନ କରି ତାଙ୍କ କର୍ମପଥରେ ଦୀପ ଦାନ କରୁଥିଲେ ।

ଜୀବନର ଶେଷମୁହୂର୍ତ୍ତପର୍ଯ୍ୟନ୍ତ ସେ ନିଜ ଦେଶ, ନିଜ ଜାତିର ସର୍ବାଙ୍ଗୀନ ଉନ୍ନତି କରିବାସକାଶେ କାର୍ଯ୍ୟପନ୍ଥା ଉଦ୍ଭାବନ କରୁଥିଲେ । ସେ ଯାହା ଲେଖିଗଲେ ସବୁତକ ସେହି ଜାତିର ଉନ୍ନତିପାଇଁ ଉଦ୍ଦିଷ୍ଟ । ଏଇଥିପାଇଁ ସେ ଯେ କେତେ ବିପଦର ସମ୍ମୁଖୀନ ହୋଇଛନ୍ତି, ତା'ର ଇୟତ୍ତା ନାହିଁ । ଶାସକଗୋଷ୍ଠୀର ନାଲି ଆଖି, ଧର୍ମପନ୍ଥୀଙ୍କର ଆକ୍ରୋଶ-

ମୂଳକ କାର୍ଯ୍ୟକଳାପ କୌଣସିଠି ହେଲେ ତାଙ୍କ ଗତିପଥରେ ପ୍ରତିବନ୍ଧକ ହୋଇପାରି ନାହିଁ । ସେ ନିଜର କଳ୍ପିତ ଗତିପଥରେ ନିର୍ଭୀକ ସୈନିକଭଳି ଆଗେଇଚାଲିଛନ୍ତି, ବିଶ୍ରାମହୀନ ଜୀବନ, ନିଃଶଙ୍କ ଆତ୍ମାକୁ ଏକାକାର କରି ଦେଶମାତୃକାର ପାଦତଳେ ଅର୍ଘ୍ୟବାଢ଼ି କରୁଛନ୍ତି, ରୁଷିଆର ଉନ୍ନତି ହେଉ ରୁଷଜନତା ଆତ୍ମନିର୍ଭରଶୀଳ ହେଉ ।

ଜୀବନ-ଦର୍ଶନ ତାଙ୍କର ଯେମିତି ବ୍ୟାପକ ଓ ତାତ୍ପର୍ଯ୍ୟପୂର୍ଣ୍ଣ । ମଣିଷକୁ ସେ ଦେବତାର ଆଶୀର୍ବାଦ ରୂପେ ଧରିନେଇ ତାକୁ ସ୍ନେହ ଓ ଶ୍ରଦ୍ଧାପାଶରେ ଆବଦ୍ଧ କରିଛନ୍ତି । ଲିଓ ଟଲଷ୍ଟୟ ଆଜି ନାହାନ୍ତି ; କିନ୍ତୁ ତାଙ୍କ ମନର ସ୍ୱାକ୍ଷର ନେଇ ଗଢ଼ି ଉଠିଥିବା ବିରାଟ ଉପନ୍ୟାସ ଓ ଗଳ୍ପ ଗ୍ରନ୍ଥସବୁ ସେହି ନୀରବ ସାଧକର ମହାନ୍ ବାର୍ତ୍ତା କହେ । ମଣିଷଜାତି ଏହି ମହାତ୍ମାଙ୍କ ଚିନ୍ତାଧାରା ଆଗରେ ନତମସ୍ତକ ହୁଏ ।

ଭାରତବର୍ଷଠାରୁ ରୁଷ୍ ଅନେକ ଦୂର । ଭାରତବାସୀର ଆଚାର-ବ୍ୟବହାର ରୁଷ୍ ଜନତାର ଆଚାର ବ୍ୟବହାରଠାରୁ ଅନେକ କ୍ଷେତ୍ରରେ ପୃଥକ୍, କିନ୍ତୁ ରୁଷିଆର ମହାନ୍ ଲେଖକ ଟଲଷ୍ଟୟ ଯେଉଁ କଥା ଲେଖିଗଲେ ତାହା ରୁଷିଆର ସାଧାରଣ ନାଗରିକଙ୍କ ପକ୍ଷରେ ଯେତିକି ପ୍ରୟୋଜନୀୟ, ଭାରତ ତଥା ଭାରତପରି ଅନ୍ୟ ଜନବାସୀଙ୍କ ପକ୍ଷରେ ସେତିକି ଗ୍ରହଣୀୟ; କାରଣ ତାଙ୍କର କଳ୍ପିତ ଦେଶ ଓ ଦେଶବାସୀଙ୍କ ଆଚାର-ବ୍ୟବହାର ତଥା ଚଳପ୍ରଚଳନରେ ଏକ ସର୍ବସମ୍ମତ ସାମ୍ୟ ରହିଛି । ତାହା କର୍ତ୍ତବ୍ୟ ଓ ଆଦର୍ଶର କଥା କହେ । ମଣିଷକୁ ମଣିଷରୂପରେ ଜୀବନ ଯାପନ କରିବାକୁ ଉପଦେଶ ଦିଏ ।

ଗୋଟିଏ ଚିତ୍ରକରର ଚିତ୍ରଦେହରୁ ଚିତ୍ରନିର୍ମାଣର ରୁଚି ଯେମିତି ଅଧ୍ୟୟନ କରିହୁଏ, ଜଣେ ଲେଖକର ଲେଖା ପଢ଼ିଲେ ତା'ର ରୁଚି ଓ

ଜ୍ଞାନ ବିଷୟରେ ସେମିତି ସମ୍ୟକ୍ ଧାରଣା କରିହୁଏ । ଟଲଷ୍ଟୟଙ୍କ ପ୍ରତ୍ୟେକ ଗଳ୍ପ, ଉପନ୍ୟାସ ଓ ନାଟକରେ ଏକ ଅଲୌକିକ ମନର ସ୍ୱାକ୍ଷର ଅଛି ଓ କୁହୁକ କଲମର ସ୍ପର୍ଶ ରହିଛି । ସାଧାରଣ ପାଠକକୁ ତାହା ଯେମିତି ବିମୁଗ୍ଧ କରେ ଚିନ୍ତାଶୀଳ ବ୍ୟକ୍ତିକୁ ସେମିତି ବିସ୍ମୟାଭିଭୂତ କରେ । ଟଲଷ୍ଟୟ ଯେ କିଭଳି ଉଦାର, ହୃଦୟବାନ୍ ପୁରୁଷ ଥିଲେ ତାଙ୍କ ରଚିତ ବିଭିନ୍ନ ଗ୍ରନ୍ଥ ନ ପଢ଼ିଲେ ସହଜରେ ହୃଦୟଙ୍ଗମ କରିହୁଏ ନାହିଁ ।

ଟଲଷ୍ଟୟ ଆଜି ଇହଧାମରେ ନାହାନ୍ତି ସତ; କିନ୍ତୁ ତାଙ୍କର କେତେକ ଅମରକୃତି ବିଶ୍ୱଦରବାରରେ ନିର୍ଦ୍ଦିଷ୍ଟ ଆସନର ଅଧିକାରୀ ହୋଇପାରିଛି । ମୃତ୍ୟୁ ତାଙ୍କୁ ଅମର କରିଛି । ଶତାବ୍ଦୀର ଆୟୁ ତାଙ୍କୁ ନୂତନ ସ୍ୱାଗତ ଜଣାଉଛି । ରୁଷମହାଦେଶର ଆଜିକାର ଏହି ଉନ୍ନତି-ମୂଳରେ ଟଲଷ୍ଟୟଙ୍କଭଳି କେତେ ଜଣ ମହାପୁରୁଷଙ୍କର ବିରାଟ ବ୍ୟକ୍ତିତ୍ୱ ରହିଛି । ରୁଷ୍‌ଦେଶ ଓ ରୁଷ ନାଗରିକ ତାଙ୍କରି ମାଟିର ଏହି ଅମୃତର ସନ୍ତାନକୁ ଭୁଲିଯିବା ସହଜ ନୁହେଁ । ରୁଷର ଶେଷ ମଣିଷ ବଞ୍ଚିଥିବାଯାଏ ତାର ରକ୍ତର ପ୍ରତିଟି ବିନ୍ଦୁରେ ଟଲଷ୍ଟୟ ଉନ୍ମାଦନା ସୃଷ୍ଟି କରିପାରିବେ । ଆଜି ଅନେକ ଦିନପରେ, ଜାରଶାସକର ପଦଦଳିତ, ଲାଞ୍ଛିତ ନିଷ୍ପେଷିତ ରୁଷ ଶ୍ରମିକ ତା'ର ମୂଳ ଦାବୀ ଅନେକାଂଶରେ ଫେରିପାଇଛି । ଟଲଷ୍ଟୟ ବଞ୍ଚିଥିଲେ ସେ ଏହି ଦୁର୍ଲଭ ପ୍ରାପ୍ତି ଦେଖି ଆନନ୍ଦରେ ନାଚିଉଠିଥାନ୍ତେ ।

ସୃଷ୍ଟିର ନିୟମ ଭିନ୍ନ ପ୍ରକାର । ମଣିଷର ଆଶା ସବୁବେଳେ ପୂରଣ ହୁଏ ନାହିଁ । ଟଲଷ୍ଟୟଙ୍କୁ ଏହି କାଳପୁରୁଷ ଶେଷକୁ ଅପହରଣ କରିନେଲା; କିନ୍ତୁ ତାଙ୍କର ଜୀବନବ୍ୟାପୀ ସାଧନାର ଫଳ ଅମୂଲ୍ୟ ସାହିତ୍ୟକୁ ଅପହରଣ କରିପାରିଲା ନାହିଁ । ସେହି ମୂଲ୍ୟବାନ୍ ଗ୍ରନ୍ଥ ପଢ଼ିଲେ ମନେହୁଏ, ଟଲଷ୍ଟୟ ପାଖରେ ବସି ଚୁପ୍ ଚୁପ୍ କଥା କହୁଛନ୍ତି । ତାଙ୍କର ଚିନ୍ତାପ୍ରସୂତ ଓ ଅଭିଜ୍ଞତାଲବ୍ଧ ଅନେକଗୁଡ଼ିଏ ଦୁର୍ମୂଲ୍ୟ ଉପଦେଶ ଆନନ୍ଦ ମନରେ ପ୍ରତ୍ୟେକ ନୂଆ ମଣିଷ ହାତରେ ଟେକିଦେଉଛନ୍ତି ।

ଜୀବଦ୍ଦଶାରେ ଥିଲାବେଳେ ମଧ୍ୟ ସେ ଠିକ୍ ତାହା ହିଁ କରିଥିଲେ । ମୃତ୍ୟୁର କୋଡ଼ିଏ ବର୍ଷପୂର୍ବରୁ ତାଙ୍କର ସାକ୍ଷାତପାଇଁ, ତାଙ୍କ ମୁହଁରୁ ପଦେ କଥା ଶୁଣିବାପାଇଁ, ଅଜସ୍ର ଲୋକ ଅନେକ ଦୂରରୁ ଆସି ତାଙ୍କ ସାଙ୍ଗରେ ସାକ୍ଷାତ କରୁଥିଲେ । ତାଙ୍କ ମୁହଁରୁ ଯାହା କିଛି ବାହାରୁଥିଲା ତାକୁ ଆଗ୍ରହର ସହିତ ନିଜର ଟିପାଖାତାରେ ଲେଖିନେଉଥିଲେ । ତାଙ୍କର ବାସସ୍ଥାନ ରୁଷିଆର ଏକ ତୀର୍ଥସ୍ଥାନରୂପେ ଖ୍ୟାତି ଅର୍ଜନ କରିସାରିଥିଲା ।

ଟଲଷ୍ଟୟଙ୍କୁ କେନ୍ଦ୍ର କରି ତେଇଶି ହଜାର ପୁସ୍ତକ ପ୍ରକାଶ ପାଇଛି ଓ ଛପନ ହଜାର ପ୍ରବନ୍ଧ ବିଭିନ୍ନ ପତ୍ର-ପତ୍ରିକାରେ ଲେଖାଯାଇଛି । ଏବେ ମଧ୍ୟ ପୃଥିବୀର ବିଭିନ୍ନ ପତ୍ର-ପତ୍ରିକାରେ ଟଲଷ୍ଟୟଙ୍କ ଜୀବନୀ ଓ ବିଚାରଧାରା ସମ୍ପର୍କରେ ସ୍ୱତନ୍ତ୍ର ଆଲୋଚନା ହେଉଛି ।

ଏଥିରୁ ସହଜରେ ବୁଝାପଡ଼ିବ, ଟଲଷ୍ଟୟ କେଉଁ ଧରଣର ଲୋକ ଥିଲେ ।

## କେତୋଟି ବ୍ୟକ୍ତିଗତ କଥା

ଟଲଷ୍ଟୟ ଦେଖିବାକୁ ସେତେ ସୁନ୍ଦର ନ ଥିଲେ । ତେଣୁ ତାଙ୍କର ମାଆ ତାଙ୍କୁ ଚେତାଇଦେଇଥିଲେ, ତୋତେ ଦେଖି କେହି କେବେ କଣଅ ଭଲ ପାଇବ ? ତେଣୁ ତୁ ଗୁଣରେ ସୁନ୍ଦର ହେବାକୁ ଚେଷ୍ଟା କର । ଚାଲାକ୍, ଚତୁର, ଶିକ୍ଷିତ ଓ ଭଦ୍ର ହେବାକୁ ଶିକ୍ଷା କର । ସେଥିପାଇଁ ସେ ନିଜେ ମଧ୍ୟ ବିବ୍ରତ ହୋଇଛନ୍ତି । ଭଗବାନଙ୍କ ନିକଟରେ ପ୍ରାର୍ଥନା କରୁକରୁ କରୁଣ କଣ୍ଠରେ ମିନତି କରିଛନ୍ତି, "ମୋତେ ଏ ମୋଟା ଓଠ, ଓସାରିଆ ନାକ, ସାନ ସାନ ଆଖି ଦେଇ କାହିଁକି ବିକୃତ କଲ ଭଗବାନ ? ମୋତେ ଯାହା କିଛି ଧନସମ୍ପଦ ଦେଇଛ, ତାକୁ ଫେରାଇନେଇ ଖାଲି ସୁନ୍ଦର କରିଦିଅ !" ଯୁବକ ଅବସ୍ଥାରେ ସେ ନିଜକୁ ବେଶ-ପୋଷାକରେ ସର୍ବଦା ସୁସଜ୍ଜିତ କରି ରଖୁଥିଲେ । ସେ ନିଜେ ପ୍ରକାଶ କରିଛନ୍ତି ଯେ ଏହି

ଅବସ୍ଥାରେ ସେ ଏକ ବୀଭତ୍ସ ଓ ଘୃଣ୍ୟ ଜୀବନ ଯାପନ କରୁଥିଲେ, ଏପରି କି ହତ୍ୟା କରିବାକୁ ମଧ୍ୟ ପଛଘୁଞ୍ଚା ଦେଉନ ଥିଲେ । କଲେଜ ପରୀକ୍ଷାରେ ଫେଲ୍ ହୋଇ ଜୀବନ ହାରିଦେବାକୁ ମନେ ମନେ ସଂକଳ୍ପ କରିଥିଲେ ।

ବାପା ତାଙ୍କର ଖୁବ୍ କଠୋର ପ୍ରକୃତିର ଲୋକ ଥିଲେ । ତାଙ୍କ ଜୀବନରେ ଖର୍ଚ୍ଚ ଓ ଫୁର୍ତ୍ତି କରିବା, ଶିକାର କରିବା ଓ ବନ୍ଧୁ ବାନ୍ଧବୀଙ୍କସହ ନିଷିଦ୍ଧ ଜୀବନ ଯାପନ କରିବା ଏକ ବିଳାସ ଥିଲା । ଟଲଷ୍ଟୟଙ୍କ ମାଆ ମରିଯିବାପରେ ସେ ପୁନର୍ବାର ବିବାହ କରିଥିଲେ ।

ଟଲଷ୍ଟୟଙ୍କ ବ୍ୟକ୍ତିଗତ ତଥା ପାରିବାରିକ ଜୀବନ ନିରାନନ୍ଦମୟ ଥିଲା । ଏଥିପାଇଁ ତାଙ୍କର ମୁଖରା ସ୍ତ୍ରୀ ହିଁ ଦାୟୀ । ଟଲଷ୍ଟୟ ଓ ତାଙ୍କ ପତ୍ନୀଙ୍କର ଚରିତ୍ରରେ ତଳ-ତାଳର ପାର୍ଥକ୍ୟ ଥିଲା । ଜଣେ ସୁଶୀତଳ ଜଳ ହେଲେ, ଅନ୍ୟଜଣକ ଉତ୍ତପ୍ତ ଲାଭାଖଣ୍ଡ । ତାଙ୍କ ସ୍ତ୍ରୀ ଧନ-ସମ୍ପତ୍ତି ଓ କ୍ଷମତାବଳରେ ଲୋକଙ୍କୁ କରଗତ କରିବାକୁ ଇଚ୍ଛା କଲାବେଳେ ଟଲଷ୍ଟୟ ସର୍ବଦା ଏହାର ବିରୋଧ କରୁଥିଲେ ।

ଏହି ମୁଖରା ସ୍ତ୍ରୀ ଟଲଷ୍ଟୟଙ୍କ ବନ୍ଧୁମାନଙ୍କୁ ବାରମ୍ବାର ଅଭଦ୍ର ବ୍ୟବହାର କରୁଥିଲେ, ଏପରି କି ନିଜ ଜନ୍ମକଲା ଝିଅଟାକୁ ଗଳାଧକ୍କା ଦେଇ ଘରୁ ବାହାର କରିଦେଇଥିଲେ ।

କିନ୍ତୁ ମହାମାନବ ଟଲଷ୍ଟୟ ନୀରବରେ ସେ ସମସ୍ତ ଜ୍ୱାଳା ସହି ନେଉଥିଲେ ।

କାଳକ୍ରମେ ଟଲଷ୍ଟୟ ନିଜ ଦେହର ଅସୁନ୍ଦର କଥା ଭୁଲିଗଲେ । ନଶ୍ୱର ଧନ-ସମ୍ପଦ ତଥା ସାମାଜିକ ସମ୍ମାନ ଉପରୁ ମନର ମୋହ ତୁଟିଗଲା । ସେ ସ୍ଥାବର ଅସ୍ଥାବର ସମସ୍ତ ଧନ-ସମ୍ପତ୍ତି ଜନତା-ହାତରେ ଟେକିଦେଇ ଆଡ଼ମ୍ବରହୀନ ସରଳ ଜୀବନ-ଯାପନରେ ବ୍ରତୀ ହେଲେ । ରୁଷିଆର କୃଷକମାନଙ୍କପରି ମୋଟା କନାର ପୋଷାକ ତିଆରି-କରି ପିନ୍ଧିଲେ ଓ ତାକୁ ନିଜ ହାତରେ ସଫାକଲେ । ଏପରି ଜୀବନ-ଯାପନ ତାଙ୍କୁ କ୍ରମେ ଆନନ୍ଦ ଦାନ କଲା ।

ଏଣେ ସେ ରୁଷିଆର ଲୋକଙ୍କୁ ବିନା ରୟାଲିଟୀରେ ତାଙ୍କର ରଚିତ ପୁସ୍ତକମାନ ଛପାଇବାପାଇଁ ସ୍ୱୀକୃତି ପ୍ରଦାନ କଲେ ।

ଏଥିରେ ସ୍ତ୍ରୀଙ୍କର ରାଗ ବଢ଼ିଗଲା ଓ ସେ ବାରମ୍ବାର ଆତ୍ମହତ୍ୟାର ଧମକ ଦେଇ ତାଙ୍କୁ ବ୍ୟସ୍ତ-ବିବ୍ରତ କରିପକାଇଲେ । ଏଣେ ଏକ ଅଶୋ-ଭନୀୟ ପରିସ୍ଥିତିରେ ସମ୍ମୁଖୀନ ହୋଇ ସ୍ତ୍ରୀଙ୍କ ଜ୍ୱାଳାରୁ ମୁକ୍ତ ପାଇବାସକାଶେ ଘର-ଦ୍ୱାର, ସନ୍ତାନ-ସନ୍ତତି ଓ ଆତ୍ମୀୟ-ସ୍ୱଜନଙ୍କ ମାୟା-ମମତା ପରିତ୍ୟାଗ କରି ସମସ୍ତଙ୍କ ଅଲକ୍ଷ୍ୟରେ ପଳାୟନ କଲେ ।

ତାହା ହିଁ ତାଙ୍କ ଜୀବନର ସର୍ବଶେଷ କାହାଣୀ । ଘରୁ ପଳାଇବାର ବାର ଦିନପରେ ଶୀତ-କାକର୍‌ରେ ପଡ଼ି ସେ ନିମୋନିଆ ରୋଗରେ ପଡ଼ିଲେ । ସେ ରୋଗ ଆଉ ଭଲ ହେଲା ନାହିଁ । ରୁଷିଆର ଛୋଟ ଏକ ରେଲ ଷ୍ଟେସନ୍‌ରେ ତାଙ୍କର ମୃତ୍ୟୁ ହେଲା । ମଲାବେଳକୁ ତାଙ୍କୁ ବୟାଅଶୀ ବର୍ଷ ବୟସ ।

ଜୀବନର ସର୍ବଶେଷ ଅବସ୍ଥାରେ ସେ କହୁଥିଲେ "ଭଗବାନ୍ ବଡ଼ଲୋକ । ସେ ସବୁ କଥା ସଜାଡ଼ିଦେବେ । ତାଙ୍କର ଆଶୀର୍ବାଦ ଉପରେ ବିଶ୍ୱାସ ରଖ !"

ମରିବାପୂର୍ବରୁ ତାଙ୍କୁ ଘରକୁ ନେବାର ବ୍ୟବସ୍ଥା ହେଉଥିଲା । ସେ ସମ୍ପର୍କରେ ତାଙ୍କୁ ଯେତେବେଳେ ପ୍ରଶ୍ନ କରାଯାଏ, ଉତ୍ତର ଦେଉଥିଲେ "ଆପଣମାନେ ମୋତେ ନେଇ ଯାହା କରିବାର ଇଚ୍ଛା କରନ୍ତୁ ପଛକେ, ଈଶ୍ୱରଙ୍କ ରାଣ, ସ୍ତ୍ରୀକୁ ମୋର ମୃତ୍ୟୁ-ସଂବାଦ ଦେବେ ନାହିଁ !"

ଟଲଷ୍ଟୟଙ୍କପରି ମହାମାନବଙ୍କ ଜୀବନର ଏହି ଅନ୍ତିମ ଅଧ୍ୟାୟପ୍ରତି ଦୃଷ୍ଟିପାତ କଲେ ଆପେ ଆପେ ଆଖିରେ ଲୁହ ଭରିଯାଏ ।

ଟଲଷ୍ଟୟ ବାସ୍ତବରେ ସଳିତାପରି ନିଜକୁ ଜାଳି-ଜାଳି ଏ ଦୁନିଆକୁ ଆଲୋକିତ କରୁ କରୁ ମୃତ୍ୟୁପରେ ଅମର ହୋଇଗଲେ ।

---